This book has been printed in paper made available by Govt. of India at concessional rate.

ପ୍ରକାଶକ :

ଜେ. ମହାପାତ୍ର

ଚଣ୍ଡୀରୋଡ଼, କଟକ

ମୁଦ୍ରଣ :

ଦେବୀ ଏଣ୍ଟରପ୍ରାଇଜର୍ସ

କଟକ

ପ୍ରଥମ ମୁଦ୍ରଣ :
୧୯୭୭
ଦ୍ୱିତୀୟ ମୁଦ୍ରଣ :
୧୯୭୯

ମୂଲ୍ୟ : ଟ ୭.୦୦

# ସୂଚୀପତ୍ର

ସାରଳା ଦାସ

# ଗୁରୁଦକ୍ଷିଣା

ଏଥୁ ଅନନ୍ତରେ ଦ୍ରୋଣେ ବିଦ୍ୟା-ପୁତ୍ରନ୍ତ ହକାରି
ବାବୁ ତୁମ୍ଭେ ଯାଅରେ ମୃଗୟା ବନ ହେରି । ୧ ।
ଅଶ୍ୱତ୍ଥମା ପ୍ରସବ ଯେ କୃପୀ ନାଶଗଲା ।
ତାହାର ପ୍ରାଣତ୍ୟାଗ ଦିବସ ନିକଟ ହୋଇଲା । ୨ ।
ଗଣ୍ଡା ଗୋଟିଏକ ଆଣ ବାବୁ ବୋଲୁ ।
ଗୁରୁଙ୍କର ବଚନେ ଚଳନ୍ତି ସର୍ବ ତନୁ । ୩ ।
ପଶ୍ଚିମେ ଭୀମ ଅର୍ଜୁନ ଦକ୍ଷିଣେ କରିକର୍ଣ୍ଣ ।
ଶତେ ସୋଦରନ୍ତ ଯେନ ଉତ୍ତରକୁ ଗଲା ଦୁର୍ଯୋଧନ । ୪ ।
ଭ୍ରମନ୍ତି କୁମାରେ ଯେ ଖେଦନ୍ତି ମୃଗାରି ।
ଛିଦ୍ରକଇଂ ନ ଗ୍ରୁଢ଼ନ୍ତି ଗଣ୍ଡାଜୀବ ଲୋଡ଼ି । ୫ ।•
ଦକ୍ଷିଣେ କର୍ଣ୍ଣ ଲୋଡ଼ି ନପାଇଲା ଗଣ୍ଡାଜୀବ ।
ମୃଗଷ୍ଟର ଯେନ ଗୁରୁଙ୍କ ଦର୍ଶନ କଲାକ ରାଧେବ । ୬ ।
ପଶ୍ଚିମ  କୋଣଲେ ଗଲେ ଭୀମସେନ ଅର୍ଜୁନେ ।
ଗଣ୍ଡା ଦୁଇଗୋଟା ଯେନ ଆସି ହୋଇଲେ ପାଣ୍ଡବନେ । ୭ ।
ଉତ୍ତରକଇ ଗଲେ ଯେ ଦୁର୍ଯୋଧନ ଶତେ ଭ୍ରାତ ।
ଦେଖନ୍ତି ବନ ଗହନେ ଯେ ଅନେକ ପର୍ବତ । ୮ ।
ଲୋଡ଼ନ୍ତି ଗହନ ଅରଣ୍ୟେଣ ପଶି ଗଣ୍ଡା ।
ଦେଖନ୍ତି ଶ୍ରମେଣ ହୋ ବହରନ୍ତି ଦୁର୍ଦ୍ଦଣ୍ଡା । ୯ ।
ମଣିନାଗ ନାମେଣ ଯେ ଗୋଟିଏ ପରବତ ।
ତହିଁର ତଳେଣ ଅଛୁ ଗୋଟିଏ ପାଣିଘାଟ । ୧୦ ।
ସେ ପାଣିଘାଟେଣ ଜଗି ଅଛନ୍ତି ଅନୁସର ।
ତହିଁର ନିକଟେ ଜୀବ ବେଣ୍ଟକାର ପୁସ । ୧୧ ।

ସେ ଜାତିର ଭାରିଯା ସରିଆ ନାମ ବୋଲି ।
ସ୍ୱାମୀକି ବୋଇଲା ତୁ ଦୃଷ୍ଟି ଦେଇ ଥାଅସି ପଛି । ୧୨ ।
ସ୍ନାହାନ କରି ମୁହିଁ ଆଣଇ ଜଳ ଘଟ ଗୋଟିଏ ।
ଦ୍ୱାରକୁ ଭଲେ କରିଥାଅ ମୋହର ଆସିବା ଯାଏ । ୧୩ ।
ସ୍ୱାମୀକଇ ପ୍ରବୋଧି ସେ ଚଳଇ ଶବରଣୀ ।
ସରୋବରେ ପଶିଣ ଘଟେ ପୂରୋଇଲା ପାଣି । ୧୪ ।
ଘଟ ଆଣି ତୀରେ ଥୋଇ ସାରିଲା ସ୍ନାହାନ ।
କୂଳେଣ ଆସି ହୋଇଲା ପତ୍ର ପରିହରଣ । ୧୫ ।
ମଥାରେ ବସାଇଣ ପାଣି ଘଟ ଗୋଟି ।
ସିଂଘଠାଣି ଜାଣି ଆସଇ ଲେଉଟି । ୧୬ ।
ଦୂରେଣ ଦେଖିଲା ତାହା ଦୁଃଶାସନ ମୂଢ଼େ ।
ଆକ୍ଷେପି ବେନି ଭୁଜେ ଧଇଲା ତାହାକର ଗାଢ଼େ । ୧୭ ।
ଦେଖିଲା ସରିଆ ଯେ ବୃହ୍ନଂଲା ଲେଉଟି ।
ତିନି ଭୁବନ ସୁନ୍ଦର ତୁ କାହାର ପୁତ୍ର ଗୋଟି । ୧୮ ।
ଶବରଣୀ ଦେଖିଣ ଧାଇଂଲେ ସର୍ବ ଦୁଷ୍ଟେ ।
ବେଢ଼ିଣ ଶବରଣୀକି ଲେଡ଼ନ୍ତି ପାପିଷ୍ଟେ । ୧୯ ।
ହେ ନାଥ ରଖ ବୋଲି ଉଚ୍ଚସ୍ୱରେ ଦେଲା ଡାକେ ।
ଆହେ ଜାତି ସ୍ୱାମୀ ମୋତେ ବଳାତ୍କାର କରନ୍ତି ଦୁଷ୍ଟଲୋକେ । ୨୦ ।
ଉଚ୍ଚସ୍ୱରେ ଶୁଣିଲା ଯନ୍ତୁଂ ଭାରିଯାର ବାଣୀ ।
ଆଖଡ଼ାର ବେଳେ ଜାତି ଶବର ତାହା ଶୁଣି । ୨୧ ।
ହସ୍ତେ ଧନୁଶର ଧରି ବାହାର କବାଟ ।
ଧାଇଁ ପ୍ରବେଶ ହୋଇଲା କୁରୁବୀରଙ୍କ ସମେତ । ୨୨ ।
ମହା ବିକଟାଳ ଜାଣି ଭଇରବ ମୂର୍ତ୍ତି ।
ଡାକ ଦଅଇ କବାଟରେ ତୁମ୍ଭେ ଅଟ କାହାର ଭଟ । ୨୩ ।
ଶୁଣି ପ୍ରଚଣ୍ଡ ମୂରଖ ଯେ ଦୁଃଶାସନ ବୀର ।
ପ୍ରଭଞ୍ଜ କରି ବୋଇଲା ତୁ କି ମଣୁ ଶବର । ୨୪ ।
ବନଚର ଲୋକ ହୋଇ ତୋହର ଏମନ୍ତ ଘରଣୀ ।
ରାଜାର ଅଭିଷେକକୁ ଏ ଯୋଗାଇ ପାଟରାଣୀ । ୨୫ ।
ଆମ୍ଭେ ସୋମବଂଶୀରେ ପୃଥିବୀ ଅଧିପତି ।
ଏହାର କାମନ୍ତେ ତୁରେ ହୋଇବୁ ପ୍ରାଣଘାତ । ୨୬ ।

ଦୁର୍ଗାର ବଚନ ଶୁଣି ଜାଗ୍ର ବେଶ୍ଯକାର ।
ଧନୁରେ ବସାଇଲା ଆନେ୍ଵଷିଣ ଶର । ୨୭ ।
ଭୂମିକ ନାଗ୍ରକ ଗୋଟିଏ ଗ୍ରଢ଼ିଲା ଗୁରୁଙ୍କ ନାମ ଧରି ।
ମଥାରେ ଘେନିଲା ସେ ମୃତ୍ତିକା ଦ୍ରୋଣଙ୍କୁ ସୁମରି । ୨୮ ।
ଏକ ଉତ୍ତର ଶତେକ ଯେ ଅଛନ୍ତି କୁରୁବୀରେ ।
ଜଣକେ ପୂରେଇଲା ଶତେ ଶତେ ଶରେ । ୨୯ ।
ଅଵକ୍ଷଣେ ବାଣ ସହୁଂ ବନ୍ଧିଲା ମହାମନ୍ତ୍ରେ ।
ଜଣକେ ଶତେ ଶତେ ପଡ଼ିଲା ନାଗ୍ରକ କଗ୍ରିତ ଲାଘବ ହସ୍ତେ । ୩୦ ।
ତ୍ରି ପଣ୍ଡ ଗଲା ଯେ ଶଷ୍ପରେ ଶର ଅସ୍ଥିଭେଦ ।
ପଡ଼ିଲେ କୁରୁବୀରେ ହୋ ରୁଧିର ବହେ ନଦୀ । ୩୧ ।
ଷାରଥୀକୁ ଘେନିଣ ଚଳଇ ବୀର ଜାଗ୍ର ।
ଆପଣା ପଲ୍ଲୀରେ ଯାଇ ପ୍ରବେଶ ମହାବୀର । ୩୨ ।
· ଦ୍ରୋଣ ବାର୍ତ୍ତ ଗ୍ରହାନ୍ତି ତହୁଂ ଦୁର୍ଯୋଧନ ନଇଲା ।
ପଣ୍ଡା ନଗ୍ରେପନ୍ତେ ଦ୍ଵାଦଶ ଦିବସ ବହିଗଲା । ୩୩ ।
ସଙ୍କେତ ଘେନିଲେ କର୍ଣ୍ଣ ଭୀମ କଗ୍ରିଟି ।
ବାର୍ତ୍ତ ଅନୁସରି ଆସନ୍ତି ପାଗ୍ରେଟି । ୩୪ ।
ପ୍ରବେଶ ହୋଇଲେ ଯାଇଂ ସରୋବର କୂଳେ ।
ଯେସନେକ ବୃକ୍ଷେ ଲୋଟନ୍ତି ମହାବାତ କାଳେ । ୩୫ ।
ଦେଖିଲେ ନାଗ୍ରକ ହୃଦେଣ ପଡ଼ି ପିଠି କଣ୍ଟକ ଫୁଟି ।
ମହାଗାଢ଼ ଶରେ ପୃଥିରେ ଅଛଇ କଣ୍ଟି । ୩୬ ।
ଭୀମସେନ ଧାଇଂ ଯାଇଂ ଦେଖିଲାକ ଦୂରୁ ।
ସମସ୍ତେ ହେ ଶସ୍ତ୍ରଘାତେ ପଡ଼ିଅଛନ୍ତି ହେ ଗୁରୁ । ୩୭ ।
ଭରଦ୍ଵାଜଙ୍କ ନନ୍ଦନ ଦେଖିଣ ବିଗ୍ରରିଲେ ।
ଏ ତ ଆମ୍ଭର ବିଦ୍ୟା ବୋଲି ଅର୍ଜୁନଙ୍କୁ କହିଲେ । ୩୮ ।
ଦେଖନ ଏ ବନସ୍ତେ କେ ଅଛଇ ଫାଲଗୁନ ।
ପରଶୁରାମଙ୍କର ବିଦ୍ୟା କେ ଅଛଇ ଅବା ଯେନ । ୩୯ ।
ଆନକୁ ଗୋଚର ନୁହଇ ଏ ବିଦ୍ୟା ।
ମାନବେ ଗୋଚରେ କାହିଁ ସ୍ଵେସନେକ ପ୍ରସିଦ୍ଧା । ୪୦ ।
ଗୁରୁଙ୍କ ବଚନେ ଚଳଇ ସବ୍ୟସାଚ ।
ଦେଖିଲା ଗହନ ବନେ ଶବର ପଲ୍ଲି ଗୋଟିଏ ଅଛି । ୪୧ ।

କରାତ ଆଖଡ଼ାସ୍ଥେ ପଚ୍ଛାକୁ ବଙ୍କଇ ବାଣ ।
ଅର୍ଜ୍ଜୁନକୁ ଦେଖିଣ ସେ ବାହାର ତତକ୍ଷଣ । ୪୨ ।
ହସ୍ତେଣ ଧାମଣା କାଠର ଧନୁ କଣ୍ଡାବାସ୍ଥେଂଶର ତୂଣ ।
କଟି ମେଖଳାଁସ୍ଥେ କୁଠାର ଫିଙ୍କ ନାଗଜର ଦ୍ରୋଣ । ୪୩ ।
ଗଦର ଗଦର ବାକ୍ୟେଣ କସବୋଁ କସ ବୋଲି ।
ଅର୍ଜ୍ଜୁନ ଉପରକୁ ଆସୁଅଛୁ ପେଲି । ୪୪ ।
ତାଙ୍କ ଦାଣ୍ଡଇ କରାତ ରୂରେ କାହାର କଣ ଅଛୁ ।
ମୁହିଂ ବନଚର ମୋହର ଆଶ୍ରମେ କପାଁ ଭେଟୁ । ୪୫ ।
ଆଶା ଥାଉ ଭରସା କପାଁଇ କର ମରଣକୁ ।
ମାର ପଛାଇ କ ବଳ ଦେବଇ ଆଜ ତୁକୁ । ୪୬ ।
ଅର୍ଜ୍ଜୁନ ବୋଇଲା ଶୁଣରେ କରାତ ।
ଏ ମୋହ ଭ୍ରାଥନ୍ତ କେ କଲା ଶରଘାତ । ୪୭ ।
ଅର୍ଜ୍ଜୁନ ବଚନ ଶୁଣି ଜାବ୍ରଣବର କୋପେ ।
ଧନୁରେ ନାରଜେ ପୂରେଇଲା ପଣତାପେ । ୪୮ ।
ଆକେଷି ଶର ଛୁଡ଼ନ୍ତେଣ ଦେଖିଲା ଫାଲଗୁନ ।
ଶବରକୁ ମାଇଲା ଦବ୍ୟ ଶସ୍ତ୍ର ଘେନ । ୪୯ ।
ଶରେଣ ଶର ପଡ଼ ତାଳ ହୋଉଣ ଅଛନ୍ତ ।
ଗଜ ସମସ୍ତ ହସ୍ତେ ଚୂଡ଼ ହୋଇଯାନ୍ତ । ୫୦ ।
ଶତେକ ନାରଜ କୋପେ ପୂରେଇଣ ଜାବ୍ର ।
ଅର୍ଜ୍ଜୁନ ଉପରକୁ ପେଶିଲା ମହାବୀର । ୫୧ ।
ଶତେକ ନାରଜ ଯେ ପେଶିଲା ଅର୍ଜ୍ଜୁନ ।
ଛେଦଣ ପକାଇଲା କରାତ ଶହସ୍ରମାନ । ୫୨ ।
କରାତ ଅର୍ଜ୍ଜୁନେ ହୋଅନ୍ତେ ଅନ୍ୟାଅନ୍ୟ ।
ଶହସ୍ର ବଘାତେଣ କମ୍ପିଲା ମେଦନୀ । ୫୩ ।
ଗୁଣ ଟଙ୍କାର ଘାଏ ଶୁଭଇ ଗୁରୁ ଘୋଷ ।
ତ୍ରିଭୁବନକଇ ଲଗିଲା ବଡ଼ ତ୍ରାସ । ୫୪ ।
ଦ୍ରୋଣ ଶୁଣିଲେ ଶହସ୍ର ସ୍ୱବବାଣୀ ।
କର୍ଣ୍ଣ ଭୀମ ଘେନଣ ଧାଇଁଲେ ବୀରମଣି । ୫୫ ।
ଦେଖିଲେ ଅର୍ଜ୍ଜୁନ କରାତର ସମର ।
ଜାବ୍ର ଅର୍ଜ୍ଜୁନକୁ ପୂରଇ ଅଛଇ ଶର । ୫୬ ।

ଦ୍ରୋଣ ଭେଟିଲେ ଯାଇ ସମର କରନ୍ତି ବେନି ।
କେହ୍ନ କାହାକୁ ନ ଯୁଝନ୍ତି, ସମର ଅନ୍ୟାଅନ୍ନ । ୫୭ ।
ଦ୍ରୋଣେ ପଚାରିଲେ ହୋ ରହ ରହ ବାବୁ ।
କାହାର ଠହୁଂ ତୁ ସାଧିଲୁ ଏହି ବିଦ୍ୟାସବୁ । ୫୮ ।
କାହାର ଶିଷ୍ୟ ତୁ କେ ତୋହୋର ଗୁରୁ ।
କାହାର ବିଦ୍ୟା ସାଧି ଯେତେକ ଯୁଦ୍ଧ କରୁ । ୫୯ ।
କିରାତ ବୋଇଲା ଶୁଣ ହୋ ବ୍ରାହ୍ମଣ ।
ମୋହୋର ବିଦ୍ୟାଗୁରୁ ଅଟନ୍ତି ହାଦେ ଦ୍ରୋଣ । ୬୦ ।
ଗୁରୁ ସ୍ତମ୍ଭୀଭୂତ ହୋଇଲେ କିରାତ ବଚନେ ।
ଆମ୍ଭେ ସେ ଦ୍ରୋଣ ହୋ ଅଟୁ ବିଦ୍ୟାମାନେ । ୬୧ ।
ବଦନ୍ତି ଦ୍ରୋଣେ କାହିଂ ଅଛନ୍ତି ତୋର ଗୁରୁ ।
ଆମ୍ଭଙ୍କୁ ଦେଖାଅ ତୁ କାହାକୁ ସେବା କରୁ । ୬୨ ।
ଆଖଡ଼ା ଶାଳକୁ କଢ଼ାଇଣ ନେଲା ।
ମାଟିର ଦ୍ରୋଣକୁ ନେଇଣ ଭେଟାଇଲା । ୬୩ ।
ଏହି ସେ ମୋହର ଅଟନ୍ତି ଦ୍ରୋଣ ସିଦ୍ଧା ।
ଯେହାଙ୍କୁ ସେବି ମୁଁ ସାଧିଲି ସର୍ବବିଦ୍ୟା । ୬୪ ।
ଗୁରୁ ପୁଚ୍ଛାକଲେ କେମନ୍ତେଣ ସାଧିକଲୁ ।
ଆମ୍ଭର ପୁତ୍ରଙ୍କୁ ତୁ ହେଲେଣ ମାଇଲୁଁ । ୬୫ ।
ବୋଲଇଂ କିରାତ ମୁଂ ଗଲଇ ବାରୁଣାବନ୍ତେ ।
ବୋଇଲି ଯେ ବିଦ୍ୟା ଶିଖାଅ ଦ୍ରୋଣଗୁରୁ ମୋତେ । ୬୬ ।
ଯୁଧିଷ୍ଠି ଦେବ ବୋଲେ ସେ ଦୟା ମୋତେ କଲା ।
ଦୁର୍ଯୋଧନ ବୋଲେ ସେ ମୋତେ ବାହାର କରିଦେଲା । ୬୭ ।
ଅପମାନ ପାଇଣ ମୁଂ ଠହୁଂ ଅଇଲି ।
ବାରୁଣାବନ୍ତଠାରୁ ଯେଠାକୁ ଲଟା କଟାଇଲି । ୬୮ ।
ଆଖଡ଼ାଏହି ଭିଆଇଲି ପଲ୍ଲିର ଦୁଆରେ ।
ମୃତ୍ତିକା ଦ୍ରୋଣ ଥାପି ସାଧିଲି ସମରେ । ୬୯ ।
ଯେହ୍ନଠାରେ ଥାଇଂ ଗୃହାଇଂ ବାରୁଣାବନ୍ତ ଆଖଡ଼ାକୁ ।
ଦୃଷ୍ଟିପାତ କରୁଥାଇ ଦ୍ୱାଦଶ ଯୋଜନକୁ । ୭୦ ।
ଯେଉଂଣ ପାଦଗଢ କରନ୍ତି ଦ୍ରୋଣଗୁରୁ ।
ମୁଇଂ ଏଥି ସାଧଇ ସମସ୍ତଙ୍କ ପାଦଗଢ କରୁ । ୭୧ ।

ଶୁଣିଣ ଦ୍ରୋଣେ ଯେ ପରମ ଆନନ୍ଦେ ।
ତାଙ୍କୁ ଆଣି ବସାଇଲେ ସନ୍ନିଧେ । ୭୨ ।
ଆମ୍ଭେ ଦ୍ରୋଣ ଏ ଅର୍ଜୁନ ଭୀମ କର୍ଣ୍ଣ ।
ଯାହାଙ୍କୁ ଶର-ଘାତ କଲୁ ସେ କି ଦୁର୍ଯ୍ୟୋଧନ । ୭୩
ଏସନ ବଚନ ଶୁଣି ବୀର ତାରା ।
ଦ୍ରୋଣଙ୍କର ପଦ୍ମପାଦେ ପ୍ରଣିପାତ୍ୟ ମହାବୀରା । ୭୪ ।
ଦ୍ରୋଣ ବୋଇଲେ ତୁ ଆମ୍ଭର ବିଦ୍ୟାପୁତ୍ର ବାରୁ ।
ଯେ ପୁତ୍ରମାନଙ୍କୁ ମାଇଲୁ ସେ ଆମ୍ଭର ସବୁ । ୭୫ ।
ବିଦ୍ୟା ପରୀକ୍ଷା ବାରୁ ଜାଣିବା ଯୁଗତେ ।
ପୁଣି ସେ ପୁତ୍ରମାନେ ଜୀବନ୍ତ ଯେମନ୍ତେ । ୭୬ ।
ତାରା କରି ଘେନିଣ ଗଲେ ସଂଗ୍ରାମ ଭୂମି ।
ତାରା ବୋଇଲା ଏହିକ୍ଷଣି ଜୀଆଁଇଲି ସବୁ ସ୍ୱାମୀ । ୭୭ ।
ଧନୁରେ ବସାଇଣ ଜୀବନ୍ୟାସ ଶର କଲା ବୃଷ୍ଟି ।
ମୋହ ଛାଡ଼ି ଉଠିଲେ କୁମାର ଧୃତରାଷ୍ଟ୍ରି । ୭୮ ।
ଦ୍ରୋଣଙ୍କର ପଦ୍ମପାଦେଣ ପରଣାମି ।
ଶବର ଶର ଘାତେଣ ପ୍ରାଣ ନାଶ ହୋଇଲୁ ଦେବ ସ୍ୱାମୀ । ୭୯ ।
ଦ୍ରୋଣ ପ୍ରାୟେ ତୋଷି ଆମ୍ଭେ ବିଦ୍ୟା ଯେ ସାଧିଲୁ ।
କିରାତ ମାତ୍ରକେ ଆମ୍ଭେ ସମସ୍ତେ ସଂଗ୍ରାମେ କ୍ଷୟେ ଗଲୁ । ୮୦ ।
ପର୍ଶୁରାମ ବିଦ୍ୟାରେ ତୁ ଆପଣ ଗୁରୁଦ୍ରୋଣ ।
ଅସ୍ତ୍ରବେ ଶିଖାଇଲୁକି ଦେବ ନୋହିଲା କାରଣ । ୮୧ ।
ଧିକ ହେଉ ଜୀବନ ଆମ୍ଭର କ୍ଷତ୍ରି ବୃତ୍ତେଣ କିସ କାର୍ଯ୍ୟ ।
ଜନମୁଖେ ଅପଖ୍ୟାତ ପାଇବୁ ବଡ଼ାଇ ଲାଜ । ୮୨ ।
ଦ୍ରୋଣେ ବୋଇଲେ ତୁମ୍ଭେ ନଜାଣ କିଛି ହୁଂ ଛନ୍ଦେ ।
ଆମ୍ଭର ବିଦ୍ୟାପୁତ୍ର ଅଟଇ ତାରା କିରାତେ । ୮୩ ।
ଏକ ବିଦ୍ୟାସ୍ତ୍ରେଣ ଧ୍ୱଂସି ହୋଇଲ ଭ୍ରାତ ବେନି ।
ଘରେ ଘରେ ଏକ ସୋଦରେ ହୋଇଲ ଅନ୍ୟାଅନି । ୮୪ ।
ଏଥକରି ଅଭିମାନ କରିତ ନ ଯୋଗାଇ ।
ଆମ୍ଭର ବିଦ୍ୟାପୁତ୍ର ଅଟଇ ହାଦେ ସ୍ନେହ । ୮୫ ।
ଗଣ୍ଡା ଦୁଇଗୋଟି ଯେ ଘେନିଗଲା ପ୍ରଥମେ ଆଖଡ଼ାକୁ ।
ତୁମ୍ଭେ ଅପମାନ କରି ଯେ ବାହାର କରିଦେଲ ଏହାକୁ । ୮୬ ।

ଦ୍ରୋଣଙ୍କର ବଚନେ ଦୁର୍ଯ୍ୟୋଧନ ପରମ ଶାନ୍ତ ।
ଦ୍ରୋଣେ ବୋଇଲେ ବାବୁ ତୁ ବନେ ଥାଅନଭ୍ରାନ୍ତ । ୮୭ ।
ଆମ୍ଭେ ଯାଉଅଛୁଁ ହସ୍ତିନା ଭୁବନକୁ ।
ଜାବ ବୋଇଲା ଗୁରୁ ଦକ୍ଷିଣା ମାଗ ମୁକୁ । ୮୮ ।
ଶୁଣିଣ ଦ୍ରୋଣ ପରମ ସାନନ୍ଦ ଚିତ୍ତେ ।
ଗୁରୁ ଦକ୍ଷିଣା ଶିଷ୍ୟକୁ ମାଗଇ ଯୁଗତେ । ୮୯ ।
ସତ୍ୟ କଲେ ତୋତେ ମାଗିବୁ ଦକ୍ଷିଣା ।
ଯୁଗେ ଯୁଗେ ରହିବ ତୋହୋର କହଣା । ୯୦ ।
ଜାବ ବୋଇଲା ସ୍ୱାମୀ ହେ ମୁହିଁ ସତ୍ୟ କଲଇଁ ।
ମୋହର ଶିରକମଳ ମାଗିଲେହେଁ କାଟି ଦେବଇଁ । ୯୧ ।
ଜ୍ୟେଷ୍ଠ ଅଙ୍ଗୁଳି ଗୋଟି ଧଇଲେ ଗୁରୁ ଟାଣି ।
ନାରାଜ ବନ୍ଧନ୍ତେ ହାଥେ ତୋହର ନଥିବ କଷୂଣି । ୯୨ ।
ଚତୁର୍ଥ ଅଙ୍ଗୁଠିରେ ବାବୁ ବନ୍ଧିବୁ ତୁ ଶର ।
ଏତେବେ ଗୁରୁ ଦକ୍ଷିଣାରେ ହୋଇବ ଆମ୍ଭର । ୯୩ ।
ଜାବ୍ ବୋଇଲା ଗୁରୁ ହେ ଭସ୍ମେ କଲ କି ମୁକୁ ।
ମୁକୁଳ କଲଙ୍କ କଲ ଉଦ୍ଧରିଲ ଏହାଙ୍କୁ । ୯୪ ।
ଯେବଣ ଅଭିମାନ କଲେ ମୋତେ ବାରୁଣାବନ୍ତେ ।
ସେ କଥା ଖଣ୍ଡି ମୁଁ ଧରି ଅଛଇ ହୃଦଗତେ । ୯୫ ।
ମୁଇଁ ସେ ନାଶ କରନ୍ତି ଦୁର୍ଯ୍ୟୋଧନର ବଂଶ ।
କୁରୁବଳ ସମସ୍ତ ମୁଇଁ କରନ୍ତି ନା ଧ୍ୱଂସ । ୯୬ ।
ଜାଣିଣ ଏମାନଙ୍କୁ ରକ୍ଷା କଲ ଗୁରୁ ହେ ।
ପରମ ମହାତ୍ମା ତୁ ଯେ ସଞ୍ଚିଲୁ ସନ୍ଦେହେ । ୯୭ ।
ଜାବକୁ କଲ୍ୟାଣ କରି ବୁହାଇଲେ ଆଶ୍ରମେ ।
ପୁତ୍ରନ୍ତ ଘେନି ଗୁରୁ ଗଲେ ବାରୁଣାବନ୍ତ ଭୁବନେ । ୯୮ ।

□□□

ମାର୍କଣ୍ଡ ଦାସ

# କେଶବ କୋଇଲି

କୋଇଲି କେଶବ ଯେ ମଥୁରାକୁ ଗଲା ।
କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା ଲୋ କୋଇଲି । ୧ ।
କୋଇଲି ଖଣ୍ଡ କ୍ଷୀର ଦେବି ମୁଁ କାହାକୁ ।
ଖାଇବାର ପୁତ୍ର ଗଲା ମଥୁରାପୁରକୁ ଲୋ କୋଇଲି । ୨ ।
କୋଇଲି ଗଲା ପୁତ୍ର ବାହୁଡ଼ି ନଇଲା ।
ଗହନ ତ ବୃନ୍ଦାବନ ଶୋଭା ନ ପାଇଲା ଲୋ କୋଇଲି । ୩ ।
କୋଇଲି ଘର ମୋର ନ ମଣନ୍ତି ନନ୍ଦ ।
ଘଟଣ ନ ଦଣେ ପୁର ନ ଥିଲେ ଗୋବିନ୍ଦ ଲୋ କୋଇଲି । ୪ ।
କୋଇଲି ନନ୍ଦ ଦେହ ପାଷାଣେ ଗଢ଼ିଲା ।
ନୟନେ କଜ୍ଜ୍ୱଳ ହୋଇ ରଥେ ବସାଇଲା ଲୋ କୋଇଲି । ୫ ।
କୋଇଲି ଚଳୁଥାଇ କଟିସୂତ୍ର ମେଖଳୀ ।
ଚକିତ ହୋଇଲେ ଶୁଣି ଗୋପପୁର ବାଳୀ ଲୋ କୋଇଲି । ୬ ।
କୋଇଲି ଛାଟେକ ମୁଁ ମାଇଲି ପୂରୁବେ ।
ଛାଡ଼ି ଅବା ଗଲେ କୃଷ୍ଣ ସେହୁ ପରାଭବେ ଲୋ କୋଇଲି । ୭ ।
କୋଇଲି ଦୂତ ପଣେ ଆଇଲା ଅକ୍ରୂର ।
ଯାତ୍ରା ବୋଲି ଭଣ୍ଡି ନେଲା ବସାଇ ରଥର ଲୋ କୋଇଲି । ୮ ।
କୋଇଲି ଝୁରୁ ଝୁରୁ ଲୁହ ନ ରହିଲା ।
ଝଗଡ଼ା ସାରଣ କୃଷ୍ଣ ମଥୁରା ରହିଲା ଲୋ କୋଇଲି । ୯ ।
କୋଇଲି ନିଶାକାଳେ ହର ମାରେ ଗ୍ରନ୍ଥ ।
ନସୁଂନ ଟେକଣ ତାଙ୍କୁ ରଉଥାନ୍ତି ନନ୍ଦ ଲୋ କୋଇଲି । ୧୦ ।
କୋଇଲି ଟହ ଟହ ହସୁଥାନ୍ତି କୋଳେ ।
ଟଳ ଟଳ ହେଉଥାନ୍ତି ଝୁଲିବାର ବେଳେ ଲୋ କୋଇଲି । ୧୧ ।

କୋଇଲି ଠଣ ଯେ ସୁନ୍ଦର ବେଣ୍ଟ ପୋଏ ।
ଠକ ଭଣ୍ଡି ଗଲେ କୃଷ୍ଣ ନଇଲେ ଭେଡ଼ାଏ ଲୋ କୋଇଲି । ୧୨ ।
କୋଇଲି ଡାକଲେ ଝୁଷଇ ଯେହ୍ନେ ଶାଖା ।
ଡାଳରନ୍ଧ୍ର ଶୁଆ ପ୍ରାୟେ ଝୁଷୁଥାନ୍ତି ହର ଲୋ କୋଇଲି । ୧୩ ।
କୋଇଲି ଢଳୁଛନ୍ତି ମାଏ ଯଶୋବନ୍ତୀ ।
ଢାଳେ ହରାଇଲି ମୋର ପୁତ୍ର ଶିଶୁପନ୍ଥ ଲୋ କୋଇଲି । ୧୪ ।
କୋଇଲି ଅନେକ ଦ୍ଵଂସିଲି ରାୟେ କଂସ ।
ଅଣହେଲା କରଣ ଆପଣେ ଗଲ ନାଶ ଲୋ କୋଇଲି । ୧୫ ।
କୋଇଲି ତନୁରେ ତା ଲେପଇ କୁଙ୍କୁମ ।
ତନୟ ଘେନାଉଥାନ୍ତି ଭାଇ ବଳରାମ ଲୋ କୋଇଲି । ୧୬ ।
କୋଇଲି ଥନ ଭାଙ୍ଗି କ୍ଷୀର ପିଆଇଲି ।
ଥିବର କାଳକୁ ପୁତ୍ର ଦେଖି ନ ପାରିଲି ଲୋ କୋଇଲି । ୧୭ ।
କୋଇଲି ଦଉଡ଼ିରେ ବାନ୍ଧିଲି ପୁତ୍ରକୁ ।
ଦାମୋଦର ରାଗେ ଗଲେ ମଥୁରାପୁରକୁ ଲୋ କୋଇଲି । ୧୮ ।
କୋଇଲି ଧନ୍ୟ ସେହୁ ଦଇବକୀ ନାରୀ ।
ଧର୍ମ୍ମ ଥିଲି ପୁତ୍ରଗୋଟି ହୋଇଲା ତାହାର ଲୋ କୋଇଲି । ୧୯ ।
କୋଇଲି ନ ଶୋଭଇ ଗୋପପୁର ମୋର ।
ନାରାୟଣ ଗଲା ଏନୁ ମଥୁରା ନଗର ଲୋ କୋଇଲି । ୨୦ ।
କୋଇଲି ପବିତ୍ର ପୁରୁଷ ମୋ ମାଧୋଇ ।
ପବିତ୍ର ମୁଁ ହେଉଥିଲି କୃଷ୍ଣମୁଖ ଗ୍ରୁହି ଲୋ କୋଇଲି । ୨୧ ।
କୋଇଲି ଫଳିବାକୁ ନାହିଁ ମୋର ଆଶ ।
ଫଳିବାର ଫଳ ଗଲା ବସୁଦେବ ପାଶ ଲୋ କୋଇଲି । ୨୨ ।
କୋଇଲି ବହୁତ ସହିଲି ତାଙ୍କ ଅଙ୍ଗ ।
ବଢ଼ାଇ ଶରଧା ଭାଙ୍ଗି ଗଲେ ବନମାଳୀ ଲୋ କୋଇଲି । ୨୩ ।
କୋଇଲି ଭଣ୍ଡି ମୋତେ ଗଲେ ବେଣ୍ଟ ପୋଏ ।
ଭାଇ ତାଙ୍କ ବଳରାମ ନଇଲେ ଭେଡ଼ାଏ ଲୋ କୋଇଲି । ୨୪ ।
କୋଇଲି ମଥୁରାକୁ ଯିବି କି ମୁଁ ଧାଇଁ ।
ମାଧବ ମଧୁସୂଦନ ଆଣିବ କଡ଼ାଇ ଲୋ କୋଇଲି । ୨୫ ।
କୋଇଲି ଯିବେ ଯେ ଆସିବେ ବୋଲି ଗଲେ ।
ଜଗତଜୀବନ ପ୍ରଭୁ ଭେଡ଼ାଏ ନଇଲେ ଲୋ କୋଇଲି । ୨୬ ।

କୋଇଲ ରତ୍ନ ବସ୍ତ୍ର ଅଳଙ୍କାରମାନ ।
ରାମ କୃଷ୍ଣ ଶ୍ରୀଅଙ୍ଗକୁ ଦଶେ ଶୋଭବନ ଲୋ କୋଇଲ । ୨୭ ।
କୋଇଲ ଲକ୍ଷ୍ମୀକାନ୍ତ ଅଟେ ନାରାୟଣ ।
ଲଲାଟରେ ନାମ ଦେଲେ ସେ ଗର୍ଗ ବ୍ରାହ୍ମଣ ଲୋ କୋଇଲ । ୨୮ ।
କୋଇଲି ବୃନ୍ଦାବନ ନ ଶୋଭଇ ମୋର ।
ବସ୍ତ୍ରା କଏ ଚରାଇବ ଯମୁନାର ତୀର ଲୋ କୋଇଲ । ୨୯ ।
କୋଇଲ ଶ୍ରୀମନ୍ତ ପୁରୁଷ ମୋ ମାଧୋଇ ।
ଶିରୀରଙ୍ଗ ଗଲି ଦନୁ ନନ୍ଦ ହେଲେ ବାଇ ଲୋ କୋଇଲ । ୩୦ ।
କୋଇଲ ଶଶୀ ଯେହ୍ନେ ଦନୁ ଦନୁ କ୍ଷୀଣ ।
ସେହ୍ନମତ କ୍ଷୀଣ ହେଲେ ମୋ ନନ୍ଦରାଜନ ଲୋ କୋଇଲ । ୩୧ ।
କୋଇଲ ସାତଦନ ଇନ୍ଦ୍ର ବୃଷ୍ଟି କଲ ।
ସପତ ବରଷ ପୁଅ ମନ୍ଦର ଧଇଲା ଲୋ କୋଇଲ । ୩୨ ।
କୋଇଲ ହାଇ ଯେ ମାରଇ ପୁତ୍ର ତୁଣ୍ଡ ।
ହୃଦରେ ଦଶଲା ତାର ସପତ ବ୍ରହ୍ମାଣ୍ଡ ଲୋ କୋଇଲ । ୩୩ ।
କୋଇଲ ଛନ୍ଦଣି ବନ୍ଧଣି ଭୁଜଦଣ୍ଡ ।
କ୍ଷମାକର ଦୋଷ ମୋର ଭଣେ ମାରକଣ୍ଡ ଲୋ କୋଇଲ । ୩୪ ।

□□□

ବଳରାମ ଦାସ

## ଗୁହକର ପଦାଘ

ରଥରେ ବସିଣ ରାମ ତତ୍‌କ୍ଷଣ ଯେ ଗଲେ ।
ସରସ୍ୱତୀ ନଦୀ ତୀରେ ତକ୍ଷଣେ ମିଳଲେ । ୧ ।
ତାହା ପାର ହୋଇ ସେ ପଶିଲେ ଘୋର ବନ ।
ଗଙ୍ଗାନଦୀ କୂଳେ ରାମ ହୋଇଲେ ତକ୍ଷଣ । ୨ ।
ଶୃଙ୍ଗବେର ପୁର ଅଟେ ତହିଁର ନିକଟ ।
ଗୁହ ନାମେ ଶବର ବସାଇ ତହିଁ ରାଷ୍ଟ୍ର । ୩ ।

ଯେ ଶବର ଅଟଇ ଯେ ଶ୍ରୀରାମ ମିତ୍ର
ଶ୍ରୀରାମ ପାଶେ ମିଳିଲା ଆସି ସେ ତୁରିତ । ୪ ।
ସଙ୍ଗରେ ବଳ ତାହାର ଯେତେ ଅପ୍ରମିତ ।
ବିପରୀତ ବେଶେ ଯେ ସେମାନେ ମେଳେଛନ୍ତି । ୫ ।
କର୍ଣ୍ଣରେ ତାଡ଼ଙ୍କ ଯେ ବନ୍ଧଆ ପୁଞ୍ଜି ପୁଞ୍ଜି
ଲଲାଟରେ ଶୋଭିକୁ ଯେ ଗୁଞ୍ଜମାଳ ରଞ୍ଜି । ୬ ।
କେ ଖୋସାପାରିଛୁ କେହୁ ବାନ୍ଧେ ଜୁଡ଼ା ବାନ୍ଧି
କାହାର ବେଣୀ ଅଛଇ କେହୁ ମୁଣ୍ଡ ବାନ୍ଧି । ୭ ।
ପିଠି କଣ୍ଟକ କାହାର ଲମ୍ବି ଅଛୁ ଛଟ
ମନ୍ଦାର ଫୁଲ ସୁନ୍ଦର ହସେ କାହା ଜଟ । ୮ ।
କେ କାଣି କଉଡ଼ିମାନ ମାଳ ମାଳ କରି
ଶରଧା ନିମନ୍ତେ କେ କଟିରେ ଅଛୁ ଭରି । ୯ ।
କାହାର ବାହୁରେ ଯେ ଝସର ରଙ୍ଗ ସୁତା
ଅଜଗର ଚର୍ମ କାହା ଗଳାରେ ପଇତା । ୧୦ ।
ନାକ ଫୋଡ଼ି ପିତଳ ମୁଦ୍ରି ଭରି ଅଛଇ
ଲୁହାଶିକୁଳି କାହାର ଭୁଜରେ ଶୋଭାପାଇ । ୧୧ ।
କାହାର ଶିରେ ଝୋପର ମୟୂରର କଣ୍ଠା
ଭାଲୁଙ୍କର ଚର୍ମେ କେହୁ ମଣ୍ଡି ଅଛୁ ଅଣ୍ଟା । ୧୨ ।
କାହା ଅଣ୍ଟାରେ ଘଣ୍ଟାମାଳ ଧ୍ୱନି କରି
କାହାର ଚରଣେ ପୁଣି ବାଜଇ ଘାଗୁଡ଼ି । ୧୩ ।
ଖାଙ୍କର କେଶ କାହାର ଡିମା ଡିମା ଆଖି
ଭଲ ଭଲ ଲୋକେ ଯେ ଡରନ୍ତି ତାଙ୍କୁ ଦେଖି । ୧୪ ।
କାହାର ନଶ ଆରକ ଦେହରେ ଲଗଇ
ପିଙ୍ଗଳ କେଶ ଦେଖିଲେ ମନେ ତ୍ରାସ ପାଇ । ୧୫ ।
କାହା ନାକପୁଡ଼ାରେ ବାହାରି ହସେ ବାଳ
ତହିଁ ଗୁନ୍ଥା ହୋଇ ପ୍ରାୟେ ହସେ ଗୁଞ୍ଜାମାଳ । ୧୬ ।
ଦେହର ରୋମକୁ ଯେ ଦେଖିଣ ଭୟଙ୍କର
କାହାର କାହାର ଭ୍ରୁପା ବୁଝି ତ ନପାରି । ୧୭ ।
କାହାର ବାଳରେ କେହୁ ଜଟ ପାରୁଅଛୁ
ଖଣ୍ଡି ଖଣ୍ଡି କରି ପୋଡ଼ି ମାଂସ କେ ଖାଉଛୁ । ୧୮ ।
ବିଭୂତିରେ ବିଲେପନ କାହାର ଶରୀର
ରବତେଲେ କାହା ମୁଣ୍ଡବାଳ ଜରଜର । ୧୯ ।

କାହା ଶରୀରରେ ଶୋଭା ପାଏ ଇଟାଗୁଣ୍ଡି
ରଙ୍ଗମାଟି ଘେନି କେ ଶରୀର ହୋଏ ମଣ୍ଡି । ୧୦ ।
କେହୁ ଲଟା ଗୁଡ଼ିଆଇ ହୋଇଥାଇ ପାଏ
ହାତୀଭଙ୍ଗା ଡାଳକୁ ଯେ ଭଙ୍ଗିଣ ଥୋକାଏ । ୧୧ ।
ଧାମଣା କାଠର କେହୁ କରଣ କୋଦଣ୍ଡ
ଗୋରୁଚର୍ମ ତୂଣ ଯେ ନାହାଲ ବେନି କାଣ୍ଡ । ୧୨ ।
ଏକ କରେ କୁଠାର କେ ଧନୁ କରେ ଘେନି
କେ କରେ ଘେନଅଛଇ ଭଙ୍ଗି ଡାଳ ବେନି । ୧୩ ।
ମୂଷଳ ମୁଦ୍‌ଗର ଶର ଯାଠିକ ପ୍ରହାର
ଶିକଳ ଲଗାଇ କେହୁ କୁକୁରକୁ ଧର । ୧୪ ।
ଅଣ୍ଟାର ମେଖଳା କେହୁ କିଙ୍କିଣି ଝୁଙ୍କନ୍ତି
ତୂଣୀରରୁ କାଣ୍ଡ କେ କାଢ଼ିଣ ଯଳଖନ୍ତି । ୧୫ ।
କାଟେଗର କରଇ କେ ବାଟେ ଯାଉଁ ଯାଉଁ
ମାର ମାର ବୋଲି କେ ମୁହଁନ୍ତି ଧାଉଁ ଧାଉଁ । ୧୬ ।
ଦଶ ଲକ୍ଷ ପଦାତି ଘେନିଣ ଗୃହ ବୀର
ଦରଶନ କଲେ ଆସି ଶ୍ରୀରାମ ପଦ୍ମର । ୧୭ ।

□ ◌ □

ଜଗନ୍ନାଥ ଦାସ

# ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା

[ଶ୍ରୀମଦ୍‌ଭାଗବତ : ଅଷ୍ଟମ ଅଧ୍ୟାୟ]

ଶ୍ରୀ ଶୁକ ଉବାଚ

ନମଇଁ କୃଷ୍ଣ ପଦ୍ମପାଦ । ଏ ମୋର ଜୀବନ ସମ୍ପଦ ॥
ପରୀକ୍ଷ ମୁଖକୁ ଚାହିଁଲେ । ଆନନ୍ଦେ ନୟନ ବୁଜିଲେ ॥
ବୋଲନ୍ତି କୃତକୃତ୍ୟ ହୋଇ । ଶୁଣ ରାଜନ ମନଦେଇ ॥
ଗୋପ ନଗରେ ନରହରି । ମାଇଲେ ପୂତନା ଅସୁରୀ ॥

ଦେବଙ୍କ ଭୟ ନିବାରିଲେ | ନିଜ ଶରୀରେ ଠାବ ଦେଲେ ||
ଯାହାର ନାହିଁ ମିତ୍ର ବୈରୀ | ଚଣ୍ଡାଳ ବ୍ରହ୍ମ ଆଦି କରି ||
ସାଧୁଙ୍କ ପାଳି ଦୁଷ୍ଟ ନାଶି | ଦୟାସାଗର ବ୍ରହ୍ମରାଶି ||
ତାହାର ଯେତେ କର୍ମମାନ | ବାଳକ ଚରିତ ବିଧାନ ||
ପୁଣି ଭଜନ୍ତି ଯେତେ ପ୍ରାଣୀ | ତରନ୍ତି ଭବ-ତରଙ୍ଗିଣୀ ||
ମାୟା ମନୁଷ୍ୟ ଅବତାର | ଖଣ୍ଡିବେ ଅବନୀର ଭାର ||
ଆଉର କଲେ ଯେତେ ଯେତେ | କହେ ମୁନି କରି ଦୟା ଚିତ୍ତେ ||
କହନ୍ତି ଶୁକ ମୁନିବର | ରାଜନ ଶୁଣ ନୃପସାର ||
ଶୁଣ କହିବି ହରିଗାଥା | ଯେଣେ ତୁଟିବ ଭବବ୍ୟଥା ||
ଅନୁଡ଼ି ଉଠିଆସି ଦିନ | ଆସି ମିଳିଲେ ଗୋପୀଜନ ||
ମଙ୍ଗଳ ବାଦ୍ୟନାଦ କରି | ସ୍ନାନ କରାଇଲେ ମୁରାରି ||
ବ୍ରାହ୍ମଣ ମିଳିଲେ ଥୋକାଏ | ଆଶିଷ ଦେଲେ ମାତା ପୋଏ ||
ଆନନ୍ଦ ମନେ ନନ୍ଦରାୟେ | ଧନ ବସନମାନ ଦିଏ ||
ଗୋପୀ ଆନନ୍ଦେ ଗୀତସ୍ୱର | ନିଦ୍ରା ମୋହିତ ଚକ୍ରଧର ||
ଶକଟ ତଳେ ବସ୍ତ୍ରପାରି | ଯଶୋଦା ଶୁଆଇ ମୁରାରି ||
ନିଦ୍ରା କରାଇ ଗୀତ ଗାଇ | ଗୋପୀଙ୍କୁ ଦେଲେକ ବଧାଇ ||
ଅକ୍ଷତ ଦେଲେ ଜଣେ ଜଣ | ପୁତ୍ରକୁ କରନ୍ତି କଲ୍ୟାଣ ||
ନିଦ୍ରା ଭାଙ୍ଗନ୍ତେ ଭଗବାନ | କାନ୍ଦି ଲୋଡ଼ନ୍ତି ମାତାସ୍ତନ ||
ଗୋଳେ ନ ଶୁଅଇ ଗୁଆଳୀ | କୃଷ୍ଣ କାନ୍ଦନ୍ତି ପାଦ ତୋଳି ||
ଶକଟେ ବାଜିଲା ପୟର | ଶବଦ କଲା ମହାଘୋର ||
ଖସିପଡ଼ିଲା ଖଣ୍ଡା ଝଡ଼ | ଦେଖି ଚକିତ ଗୋପବାଳୀ ||
ମଧୁ ତଇଲ ଘୃତଭାଣ୍ଡ | ଭାଙ୍ଗି ହୋଇଲା ଖଣ୍ଡ ଖଣ୍ଡ ||
ଶବଦ ଶୁଣି ଗୋପୀ ଧାଇଁ | ମିଳିଲେ ନନ୍ଦଘରେ ଯାଇ ||
ଦେଖିଲେ ଯଶୋଦା କୁମର | ପଡ଼ିଛି ଶକଟ ତଳର ||
ଆଣି ପୁତ୍ରକୁ କୋଳ କଲେ | ଏକକୁ ଆରେକ ପୁଛିଲେ ||
ଏ କି ଆପଦ କାହୁଁ ହୋଇ | ଏମନ୍ତ ଦେଖିଲୁ ତ ନାହିଁ ||
ଶକଟ ଭାଙ୍ଗିଲା କେମନ୍ତ | ବୁଝ ହୋ ଏହାର ତଦନ୍ତ ||
ଯଶୋଦା ଦେବୀ ଭାଗ୍ୟବନ୍ତ | ଭଲେ ନ ମଲା ତାର ସୁତ ||
ବାଳକୁମରେ ତାହା ଶୁଣି | କହନ୍ତି ଆମ୍ଭେ ଅଛୁ ଜାଣି ||
ଯଶୋଦାସୁତ ପାଦଘାତେ | ଶକଟ ଭାଜିଲା ଯୁକତେ ୫।
ଶୁଣି ହସିଲେ ଗୋପବାଳ | କୃଷ୍ଣର ନ ଜାଣନ୍ତି ବଳ ||

ରୋଦନ କରନ୍ତି ମୁରାରି । ଯଶୋଦା କୋଳେ ଦେଲେ ନାରୀ ॥
କ୍ରନ୍ଦ ହେବା ମନେ ଚିନ୍ତି । ଦୈବଜ୍ଞ ଆଣି କଲେ ଶାନ୍ତି ॥
ଶିଶୁକୁ ପିଆଇଲେ ସ୍ତନ । ଆନନ୍ଦ ଯଶୋଦାର ମନ ॥
ବ୍ରାହ୍ମଣେ କଲେ ପଞ୍ଚାମୃତ । ଦେଖିଣ ନନ୍ଦ କୃତକୃତ୍ୟ ॥
ହରଷ ହୋଇ ଦେଲ ଦାନ । ଧେନୁ କାଞ୍ଚନ ବସ୍ତ୍ର ଅନ୍ନ ॥
ସନ୍ତୁଷ୍ଟ ହୋଇ ବିପ୍ରଗଣେ । କଲ୍ୟାଣ କଲେ ଜଣେ ଜଣେ ॥
ଯାହା ବୋଲନ୍ତି ସିଦ୍ଧମାନେ । ଅନ୍ୟଥା ନୁହଇ ବଚନେ ॥
କହନ୍ତି ବ୍ୟାସଙ୍କ ନନ୍ଦନ । ଏମନ୍ତ ଗଲା କିଛି ଦିନ ॥
କଂସର ଆଜ୍ଞାରେ ଦଇତ । ଗୋପେ ମିଳିଲା ତୃଣାବର୍ତ୍ତ ॥
ତାହା ଜାଣିଲେ ଦଇତ୍ୟାରି । ଯଶୋଦା କୋଳେ ଛନ୍ତି ଧରି ॥
ମନେ ଚିନ୍ତନ୍ତି ଚକ୍ରଧର । ଆଜ ସଂହାରିବି ଅସୁର ॥
ଜନନୀ କୋଳେ ହେଲେ ଗୁରୁ । ଯେସନ୍ତେ ଅଚଳ ମହାମେରୁ ॥
ତକ୍ଷଣେ ଥୋଇଲେ ଅବନୀ । ବିସ୍ମର କଲେ ଭସ୍ମ ଯେନ ॥
ବାଳୁତ ଏତେ ଗୁରୁପଣ । ନ ପୁଣ ପଡ଼ଇ କଷଣ ॥
ଅବନୀ ଶୁଆଇ କୁମର । କରଇ ବ୍ୟାପାର ଦେଖିରଂ ॥
କଂସର ଆଜ୍ଞା ପରମାଣେ । ଅସୁର ମିଳିଲା ତକ୍ଷଣେ ॥
ଗଗନେ ଘୋର ନାଦ କରି । ଚକ୍ର ପବନ ରୂପ ଧରି ॥
ଦିବସ କଲା ଅନ୍ଧକାର । ଭୂମି କମ୍ପିଲା ଥରହର ॥
ବୃକ୍ଷେ ପଡ଼ିଲେ ମହୀତଳେ । ଧୂଳି ଉଡ଼ିଲା ଅନ୍ତରାଳେ ॥
ଚକ୍ଷୁବୁଜିଲେ ନରନାରୀ । ଅସୁର କୃଷ୍ଣେ ନେଲା ହରି ॥
ବୁଦ୍ଧି ନ ପାରି ବେନି ଘଡ଼ି । ଚକ୍ର ପବନ ଗଲା ଉଡ଼ି ॥
ପ୍ରକାଶେ ରବିର କିରଣ । ନିର୍ମଳ ଦିଶିଲା ଗଗନ ॥
ଘରୁ ବାହାର ନନ୍ଦରାଣୀ । ପୁତ୍ରକୁ ଲୋଡ଼ଇ ରମଣୀ ॥
ପୁତ୍ର ନ ଦେଖି ହୁଆ କୋଡ଼ି । ଧାମଇଁ ପୁଣ ପୁଣ ଲୋଡ଼ି ॥
ଘର ବାହାର ପୁର ଲୋଗେ । ବିକଳେ ଲୋଡ଼େ ଚଉଦିଗେ ॥
ଖୋଜ ନ ପାଇ ବନମାଳୀ । ତା ଶୁଣି ମିଳିଲେ ଗୁଆଳ ॥
ଖୋଜନ୍ତି ଘରେ ଘରେ ପଶି । କାହିଁ ଦେଖିବେ ବ୍ରହ୍ମରାଶି ॥
ନ ଦେଖି ପ୍ରଭୁ ଚକ୍ରପାଣି । ମୋହେ ପଡ଼ିଲେ ନନ୍ଦରାଣୀ ॥
ଗୋପୀ ଧଇଲେ ବେଗେ ଯାଇ । ଦିଅନ୍ତି ମୁଖେ ଜଳ ନେଇ ॥
ଝଡ଼କେ ହୋଇଲେ ସଚେତ । ଉଠି ଲୋଡ଼ଇ ନିଜ ସୁତ ॥
କେଶ ବସନ ଅସମ୍ଭାଳ । ପଡ଼େ ଗୋପୀଙ୍କ ପାଦତଳ ॥

ଦେଖ କହୁ ଯଶୋଦାର ଶୋକ । ଗୋପୀଏ ହୋଇଲେ ନିରେଖ ॥
ବିକଳେ ପଡ଼ନ୍ତି ଧରଣୀ । ଗୋପୀ କାନ୍ଦନ୍ତି ତାହା ଶୁଣି ॥
ବିକଳ ଓକ କରିବ ଅନ୍ତ । ଗୋପୀ ହୋଇଲେ ମୋହଗତ ॥
ତାହା ଜାଣିଲେ ଜଗନ୍ନାଥ । ଆକାଶେ ଉଠିଛି ଦଇତ ॥
କୃଷ୍ଣ ଚିନ୍ତନ୍ତି ହୃଦଗତେ । ଏ ଦୈତ୍ୟ ମରିବ କେମନ୍ତେ ॥
ଦାସବତ୍ସଳ ନନ୍ଦବଳା । ଧଇଲେ ଅସୁରର ଗଳା ॥
କଣ୍ଠେ ଲମ୍ବିଲେ ବନମାଳୀ । ଅସୁର ନ ପାରିଲା ଚଳି ॥
ବ୍ରହ୍ମାଣ୍ଡ କୋଟି କୋଟି ମାଳେ । ବସନ୍ତି ଯାର ଲୋମମୂଳେ ॥
ଅସୁର ଗ୍ଳବ ତା କାନ୍ଧେ । ଖାଲଇ ଚଉଦ୍ଦିଗ ଗୁନ୍ଧେ ॥
ବାଳୁତ ପୁଅ ଏଡ଼େ ଗରୁ । ପକାଇଦେବ ପଡ଼ି ମରୁ ॥
ଅସୁର ବିଗ୍ରହନ୍ତେ ତନ୍ଧେ । ତାହା ଜାଣିଲେ ଭାବଗ୍ରାହୀ ॥
ଧରି ଅସୁରକୁ ତ୍ୱରିତେ । ବେଗେ ଚୁପିଲେ ବାମହସ୍ତେ ॥
ବେନି ଲୋଚନ ଗଲା ଫୁଟି । ପ୍ରାଣ ଛାଡ଼ିଲା ତାକୁ ଫାଟି ॥
ଶବଦ କଲା ମହାଘୋର । ଶୁଣି କମ୍ପିଲେ ନନ୍ଦପୁର ॥
ଅସୁର ଘେନି କୃଷ୍ଣ ପୁରେ । ପଡ଼ିଲେ ଶିଳାର ଉପରେ ॥
ଅସୁର ଦେହ ହେଲା ଚୂର୍ଣ୍ଣ । ଗୋପୀ ଦେଖିଲେ ଭଗବାନ ॥
ଯମର ଘରୁ ଯେହ୍ନେ ଆସି । ଏକକୁ ଆରେକ ପ୍ରଶଂସି ॥
ଶିଳାରୁ ଘେନି ବନମାଳୀ । ଯଶୋଦା କୋଳେ ଦେଲେ ବାଳୀ ॥
ଗୋପୀ ଗୋପାଳ ଆଦି ନନ୍ଦ । କୃଷ୍ଣକୁ ପାଇଣ ଆନନ୍ଦ ॥
ଗୋପାଳ ନନ୍ଦକୁ ଅନାଇଁ । କହନ୍ତି ଭାଗ୍ୟବନ୍ତ ତୁହି ॥
କାଳର ମୁଖୁ ଉଦ୍ଧରିଲା । ପୁତ୍ରକୁ ଗୋବିନ୍ଦ ରଖିଲା ॥
ଶୀତଳ ଯଶୋଦାର କୋଳ । ବିପଦୁଁ ତରିଲା ତା ବାଳ ॥
ଅରିଷ୍ଟ ଦେଖି ନନ୍ଦ ମନେ । ଭାଳଇ ମିତ୍ରର ବଚନେ ॥
ବେଗେ ପୁତ୍ରକୁ କୋଳେ ଘେନି । ଘରେ ମିଳିଲା ନନ୍ଦରାଣୀ ॥
ସୁସ୍ୱର ନାଦେ ଗୀତ ଗାଇ । କୃଷ୍ଣର ମୁଖକୁ ଅନାଇଁ ॥
ଦେଖିଲା ଦର୍ପଣ ପରସ୍ତେ । ଉସ୍ତେ କମ୍ପିଲା ଦେଖି କାସ୍ତେ ॥
ଆକାଶ ଆଦି ଦିଗପାଳ । ଗ୍ରହ ନକ୍ଷତ୍ର ମେଘମାଳ ॥
ସପତସିନ୍ଧୁ ଲକ୍ଷେ ଗିରି । ନଦୀ କାନନ ଦିଗ ଚାରି ॥
ସ୍ଥାବର ଆଦି ସର୍ବ ଜନ୍ତୁ । ଏହି ସଂସାରେ ଯେତେ ହେତୁ ॥
ଦେଖି ଚକିତ ମନେ ଗୁନ୍ଧେ । ହୃଦେ ଚିନ୍ତଇ ଭାବଗ୍ରାହୀ ॥
ସଭୟେ ପୁତ୍ର କୋଳେ ଘେନି । ଘରେ ମିଳିଲା ନନ୍ଦରାଣୀ ॥

ଆନନ୍ଦ କେ ପାଶବ କହି । ଯାହାର ସୁତ ଖବଗାହି ॥
ନନ୍ଦା କରାଇ ହୃଷୀକେଶ । କହିଇ ଜଗନ୍ନାଥ ଦାସ ॥

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ବାଳକ୍ରୀଡ଼ା ଶକଟାସୁର ତୃଣାସୁର ବଧୋ ନାମ ଅଷ୍ଟମୋଽଧ୍ୟାୟ ।

□□□

ଅଚ୍ୟୁତାନନ୍ଦ ଦାସ

## ଶୂନ୍ୟସଂହିତା : ଏକାଦଶ ଅଧ୍ୟାୟ

ରାମଚନ୍ଦ୍ର ଦାସ ପଡ଼ି ଚରଣେ । କହଇ କରଯୋଡ଼ି ସନ୍ନିଧାନେ ॥
ଶୁଣିଲି ଅମୃତ ଅପୂର୍ବ ବାଣୀ । ତରିଲି ପୂର୍ବଭାଗ୍ୟରୁ ମୁଁ ପୁଣି ॥
ଅପୂର୍ବ ଶ୍ରୀକୃଷ୍ଣ ମହିମା ଯେତେ । କହି ଉଦ୍ଧାରିଲ ସୁଦୟାଚିତ୍ତେ ॥
ସ୍ୱୟଂ ପ୍ରଭୁ ମୋର ତୁମ୍ଭେ ଯେ ଅଟ । ଅଧମ ଉଦ୍ଧାରେ ତୁମ୍ଭେ ପ୍ରକଟ ॥
ପତିତ ଉଦ୍ଧାର କରିବା ପାଇଁ । ପ୍ରକାଶ ହୋଇଛ ଆପେ ଗୋସାଇଁ ॥
ଅଦୃଶ୍ୟମାନ ଦୃଶ୍ୟ ହୁଏ ଯେଣୁ । ଏପରି ମାତ୍ରା ଆପେ ଅଟ ତେଣୁ ॥
ଅକ୍ଷର ରୂପେ ଆତ୍ମାରାମେ ରମ । ସକଳ ଘଟେ ଘଟେ ଆପେ ପରମ ॥
ଆପେ ଥିଲାକୁ ଶୂନ୍ୟ କାୟା ଚଳେ । ଆପେ ଅଚଳ ଶୂନ୍ୟ ହିଁ ଅଚଳେ ॥
ଶପୁମର୍ଦ୍ଦନପୁରେ ଯା ନିବାସ । ତାଙ୍କ ଚରଣେ ଆଶ ରାମଦାସ ॥
ତୁମ୍ଭେ ଯେ ଅଟ ଗୁରୁ ପ୍ରଭୁ ମୋର । ମାତା ବନ୍ଧୁ ଅଟ ପୁଣ ସୋଦର ॥
ତୁମ୍ଭ ବିନୁ ମୋର କେ ଅଛି ଆଉ । ଫେଡ଼ିବ ସଂଶୟ କହିବ କେହୁ ॥
ପୂର୍ବ ଭାଗ୍ୟେ ତୁମ୍ଭ ଚରଣେ ଆଶ । ପାଇଲି ଅଧମ ଏ ରାମଦାସ ॥
ଆଜ୍ଞା ହୋଇଛ ମୋତେ ଥରବାର । ଅନ୍ୟରେ ଆଉ ପ୍ରଘଟ ନ କର ॥
ଜେମନ୍ତ ଆଜ୍ଞା ମୁଁ ମେଣ୍ଟିବି ଆଉ । ଫେଡ଼ି କେ କହିବ ସଂଶୟ ଯାଉ ॥
କହିଲେ ଚିତ୍ତ ନ ବଳଇ ମୋର । ଆଜ୍ଞା ହୋଇଛି ଯାହା ନିରାଧାର ॥
ଆତ୍ମା ଉଦ୍ଧାର ଆପଣେ ତରଇ । ଆନରେ ଆଉ ପ୍ରୟୋଜନ ନାହିଁ ॥
ଲକ୍ଷେ ପୁନା ଆନ ଭୁଲି ଯାହାକୁ । ନିନ୍ଦା ଅଛି ଯେ ଯେ ପଦ ପଦକୁ ॥
**ଏମନ୍ତ ପଦାର୍ଥ ଆନେ କି ଦେବ । ଅର୍ଜିଲି ଶିଷ୍ୟ ସରେ ସମର୍ପିବ ॥**

ଦେଲରୁ ତ ଆଉ ନେବାକୁ ନାହିଁ । ଲୋଡ଼ିଲେ ଆଉ ପୁଣ ପାଏ କାହିଁ ॥
ହସ୍ତୀ ଦନ୍ତ ଯେମନ୍ତ ବାହାର । ପାଷାଣ ଗାର ଯେସନ୍ତେ ଜଗଧାର ॥
କରରୁ ଶର ଯେମନ୍ତେ ଛୁଟଇ । ପୁଣି ଲୋଡ଼ିଲେ ପାଁଏ ଅବା କାହିଁ ॥
ଗମ୍ଭୀର ସମୁଦ୍ର ପ୍ରାୟେ ହୃଦୟ । ଶରୀରେ ଦେଖଇ ଏମନ୍ତ ପ୍ରାୟ ॥
କମଠ ପୃଷ୍ଠ ପରାୟେ ହୃଦୟ । ଗୁପତ ଅଁଛ ଅକଳନ କାୟ ॥
ଆଜ୍ଞାହେବ ପ୍ରଭୁ ଏମନ୍ତ କରି । ଅଜ୍ଞାନୀ ଅମିଥ୍ୟା କି ପ୍ରତେ କରି ॥
ବେଳେବେଳେ ପ୍ରଭୁ ସଂଶୟ ଫେଡ଼ । ତୁମ୍ଭ ଦୟାରୁ ମୁହିଁ ସିନା ବଡ଼ ॥
ଗୋରୁ ଧନ ବଡ଼ ପୂରି ଅଛଇ । ଅତୁଟ ଲକ୍ଷ୍ମୀ ଅଁଚଳେ ଖଟଇ ॥
ଯାହା ବୋଲିବ ପାଦେ ସମର୍ପିବ । ଆଜ୍ଞା ଅବଜ୍ଞା କେବେଁ ନକରିବ ॥
ଶ୍ରୀମୁଖେ ଆଜ୍ଞା ହୋଇଛୁ ପ୍ରକାଶ । ମାଛା ତୋଠାରେ ନାହିଁ ରାମଦାସ ॥
ଏଣୁ ପଚାରଇ ତୁମ୍ଭ ଶ୍ରୀମୁଖରେ । ଗୁପତ କଥା ପ୍ରକାଶ ମୋଠାରେ ॥
ଏଣୁ ମୁଁ ତୁମ୍ଭ ଚରଣେ ଶରଣ । ବିଶ୍ୱାସେ ସେବଇ ତୁମ୍ଭ ଚରଣ ॥
ପ୍ରଭୁପଣକୁ ଲୁଚିହୋଇ ଯାଇ । ତୁମ୍ଭ ଆପଦ ମୋ ଶିରରେ ଥୋଇ ॥
ଯେଉଁ ପ୍ରଭୁ ଯେ ପରେ ଉଦ୍ଧାରନ୍ତା । ସେ ପ୍ରଭୁ ପାଦେ ମୁଁ ଅଟଇ କୃତା ॥
ପଦ୍ମଚରଣେ ରେଣୁ ପ୍ରାୟେ ଥିବ । କର୍ଦ୍ଦମ ପ୍ରାୟେ ମୁଁ ଲାଗିରହିବ ॥
ଜନ୍ମେ ଜନ୍ମେ ମୁଁ ତୁମ୍ଭର ଶରଣ । ତୁମ୍ଭ ବିନୁ ମୋ ଆନ ନୋହୁ ମନ ॥
ଧନ୍ୟ ମୋ ମାତା ପିତା ବନ୍ଧୁଜନ । ଧନ୍ୟ ମୋ ଜୀବନ ଧନ୍ୟ ମୋ ପୁଣ୍ୟ ॥
ଧନ୍ୟ ମୋ ସଙ୍ଗ ଧନ୍ୟ ଗୁରୁ ମୋର । ଧନ୍ୟ ପୂର୍ବ ହେତୁ ଧନ୍ୟ ଶରୀର ॥
ବେଳେବେଳେ ମୁହିଁ କହଇ ବଡ଼ । ଆଜ୍ଞା ହୁଅଇ ଯା ସଂଶୟ ଫେଡ଼ ॥
ଏଣୁ ଆଜ୍ଞାକୁ ଧରିଥାଇ ଶିରେ । ପଚାରୁଅଛୁ ବେଳୁ ବାରେ ବାରେ ॥
ବୋଇଲେ ଯେ ପ୍ରଭୁ ଶୂନ୍ୟ ଭଜନ । ଗୁପତ ନକର କର ପ୍ରଚ୍ଛିନ୍ନ ॥
କାହାଠାରେ ତୁମ୍ଭ ସୁଦୟା ଅଛୁ । କେଉଁ ଜୀବ ଶୂନ୍ୟ ମନ୍ତ୍ର ଚିହ୍ନିଛୁ ॥
ସାଧନ ଆଗେ ଭଜନ ହିଁ ପରେ । କେଉଁ ସ୍ଥାନକୁ ଶୂନ୍ୟ କହିବାରେ ॥
କେଉଁ ଭକତଙ୍କୁ କାହିଁ ରଖିଛ । ତୁମ୍ଭକୁ ସିନା ଅଟଇ ପ୍ରତ୍ୟକ୍ଷ ॥
ପ୍ରଭୁ କହିଲେ ମୁଁ ପ୍ରତେ ପାଇବ । ବାରଣବେଳେ ସଂଶୟ ନାଶିବ ॥
ବାରଣବେଳେ ନଥିବ ଜଞ୍ଜାଳ । ଥିବ ପ୍ରଭୁଙ୍କର ସଙ୍ଗତେ ମେଳ ॥
ଆଜ୍ଞା ମୋତେ ହେଉ ସଂଶୟ ଯାଉ । ତୁମ୍ଭ କରୁଣା କାଳେ କାଳେ ଥାଉ ॥
ଏତେ କହି ପୁଣ କାନ୍ଦ କହଇ । ପ୍ରଦକ୍ଷିଣ କରି ପାଦେ ଲୋଟଇ ॥
ଦେଖିଣ ଶିଷ୍ୟ ଭକତ ଉତ୍ତମ । କହିବା ଶୁଣ ତତ୍ତ୍ୱକଥା ରାମ ॥
ତୁ ଯେଣୁ ପ୍ରଭୁଙ୍କର ଅଟୁ ଭୃତ୍ୟ । ଏଣୁ ଯେ ତୋଠାରେ କଲୁ ବ୍ୟକତ ॥
ଆମ୍ଭ ପାଦରେ ଥାଅ ହସ୍ତ ଦେଇ । ଦାମ୍ଭିକ ପଣ୍ଡିତେ ଥିବୁ ଲୁଚାଇ ॥

ତରକ ତେଖିଆ ଭକତ ମେଳେ । ଏହାକୁ ରଖ ଗୁପତରେ ବେଳେ ॥
ମତ୍ସ୍ୟ ମାଂସ ଭକ୍ଷା ଅରଷ୍ଟଲୋକ । କହିଲେ ଦୋଷ ଅଛଇ ଅନେକ ॥
ପାଞ୍ଚ ସାତରେ ହଁ କର ପ୍ରକଟ । ଗୁରୁ ଶିଷ୍ୟ ଦୁହେଁ ଗୁପତେ ଭେଟ ॥
ଛତ୍ର ଶ୍ରୁତରେ ଗୁରୁ ତନୁ ହୋଇ । ଗୁରୁ ନାଶ ଶିଷ୍ୟ କ୍ଳେଶ ଲଭଇ ॥
ନରାକାର ତୁ ନ କର ପ୍ରକୀର୍ଣ୍ଣ । ମୋହ ଶପଥ ତୋତେ ରାମଦାସ ॥
ଫଣୀ ଧଇଲେ ଦଂଶଇ ରେ ବାବୁ । ଅଗ୍ନି ଲଗିଲେ ପୋଡ଼ଇଏ ସବୁ ॥
ଶସ୍ତ୍ର ଧଇଲେ କରଇ ବନାଶ । ନିଜ ଗୁଣ ତାର ନାହିଁ ମୋ ଦୋଷ ॥
ଏଣୁ ତରକେ ତେର ଅଙ୍କ ଆଗେ । ନ କହ ଏହା ତୁ ରଖିବୁ ବେଗେ ॥
ଅବଶ୍ବାସୀ କରେ ନ ହୁଏ ପୁଣି । କାଳେ ଉପହାସ ପ୍ରାୟେ ଯେ ମଣି ॥
ଏ ଘୋର କଳକ ଭସ୍ମ ମୋହର । ମହିମା ନିନ୍ଦା ନ ସହେ ଶରୀର ॥
ଘୋର କଳି ଏ ଯେ ନ କରେ ଥୟେ । ସନ୍ଥ ସାଧୁଙ୍କୁ ଯେ ଦଣ୍ଡେ ଅନ୍ୟାୟେ ॥
କପଟୀ ଭଗତ ଥୋକେ ଅଛନ୍ତି । ମୂଢ଼ପଣ କରି ନାମ ନିନ୍ଦନ୍ତି ॥
ସାତ ପାଞ୍ଚ କଥା ଶିଖିବେ ଯହୁଁ । ଫୁଲଣା ହୋଇ କହିବେଟି ତହୁଁ ॥
ନିନ୍ଦିବେ ସାଧୁ ଭଗତଙ୍କୁ ମୋର । ନର୍ମୀସ୍ଥା ଭଗତ ଅଟେ କଙ୍କର ॥
ମତ୍ସ୍ୟ ମାଂସ ଭକ୍ଷ ହେବେ ଭଗତ । କପଟି ଲୋକେ ହୋଇବେ ବହୁତ ॥
ଏମନ୍ତ ଭାବେ ପଞ୍ଚସଖା ଛନ୍ତି । ନରାକାରରେ ଲାଗି ସେ ହୁଅନ୍ତି ॥
ଏଣୁ ମୁଁ ତୋତେ ବାଛୁଣ କହଇ । ମୂଢ଼ ଅଙ୍ଗନଙ୍କି ଥିବୁ ଲୁଚାଇ ॥

× × × ×

□□□

ଶଙ୍କର ଦାସ

# ବାରମାସୀ କୋଇଲି

ଆରେ ବାବୁ ଗୃହବାସୀ, କି ଦଣ୍ଡ ହେଲା ତୋହର ।
କାହିଁ କହଣଲ୍ୟା ବୋଲନ୍ତି କୈକେଇ
ଅରଜବ କେଉଁ ଶିଖ ଲୋ । କୋଇଲି ଶୁଣ ଲୋ । ୧ ।
ଏହି ମଗୁଣିର ମାସ, କାକର ପଡ଼େ ବଶେଷ ।
ଶୀତଳ ପବନ ବହେ ଘନଘନ
ମୋ ପୁତ୍ର କଶବ କସ ଲୋ । କୋଇଲି ଶୁଣ ଲୋ । ୨ ।

ପୁଷ ମାସେ ବଡ଼ ଶୀତ କଷ୍ଟ ହବ ଅପ୍ରମିତ ।
ବିନା ବସନରେ ବୃକ୍ଷ ବକଳରେ
କି ଦୁଃଖ ନ ହେବ ଜାତ ଲୋ । କୋଇଲି ଶୁଣ ଲୋ । ୩ ।

ମାଘରେ ତହୁଁ ଅଧିକ ଗଣିବ ଦୁଃଖଦାୟକ ।
ଅମୂଲ୍ୟ ସୁପାଠ ତେଜି ରଘୁପତି
ବୁଲଇ କାନନଯାକ ଲୋ । କୋଇଲି ଶୁଣ ଲୋ । ୪ ।

ଫଗୁଣେ ଫଗୁଖେଳରେ ମାତିଛନ୍ତି ଘରେ ଘରେ ।
ମୋ ଅନ୍ଧୁଣୀଧନ ମୋଠୁଁ ହୋଇ ଭିନ୍ନ
ଭସାଇଲା ଶୋକନୀରେ ଲୋ । କୋଇଲି ଶୁଣ ଲୋ । ୫ ।

ଚଇତ୍ର ମାସରେ ଖରା ନିଦସ କରଇ ଧରା ।
ଶରୀରରୁ ଝାଳ ବହେ ଅନର୍ଗଳ,
ପଂଗୁଣ ହୋଇ ଯାବରା ଲୋ । କୋଇଲି ଶୁଣ ଲୋ । ୬ ।

ବଇଶାଖ ଖରା ଗ୍ରୀଷ୍ମେ ବାହାରକୁ ନୋହେ ଯାଇ ।
କେଉଁ ବୃକ୍ଷମୂଳେ ଜୀବନ-ବିକଳେ
ଥିବ ମୋର ପୁତ୍ର ରହି ଲୋ । କୋଇଲି ଶୁଣ ଲୋ । ୭ ।

ଜ୍ୟେଷ୍ଠେ ମୋ ଜ୍ୟେଷ୍ଠନନ୍ଦନ ଜାନକୀ ସହ ଲକ୍ଷ୍ମଣ
ନାନା ପତ୍ରଫଳ ଖୋଜି ବୁଲୁଥିବେ,
ବଧିର ଏ ବଡ଼ମନ ଲୋ । କୋଇଲି ଶୁଣ ଲୋ । ୮ ।

ଆଷାଢ଼ ମାସରେ ମେଘ ଗରଜଇ ଯେହ୍ନେ ବାଘ ।
ବେଳେ ବେଳେ ବୃଷ୍ଟି ହୁଅଇ ଅଦୃଶ୍ୟ
ଘୋଟିଯାଏ ଚଉଦିଗ ଲୋ । କୋଇଲି ଶୁଣ ଲୋ । ୯ ।

ଦେଖ ଧାରା ଶ୍ରାବଣ ଜଳ ପଡ଼େ ଅନୁକ୍ଷଣ ।
ଘର ଦାଣ୍ଡ ନାହିଁ ମୋ ଦୁଃଖୀ ଙ୍କଖାଲ
କି ରୂପେ କାଟିବ ଦିନ ଲୋ । କୋଇଲି ଶୁଣ ଲୋ । ୧୦ ।

ଭାଦ୍ରବ ହେଲେ ପ୍ରବେଶ ସୁନିର୍ମଳ ଦଶଦିଶ ।
ଅତି ସୁକୁମାରୀ ଜନକକୁମାରୀ
ମନେ ଭାଳୁଥିବ କଷ୍ଟ ଲୋ । କୋଇଲି ଶୁଣ ଲୋ । ୧୧ ।

ଆଶ୍ୱିନେ ଚନ୍ଦ୍ର କିରଣ କରଇ ମନହରଣ ।
କେତେମତେ କେତେ ଉତ୍ସବ କରନ୍ତି
ଘରେ ଥିଲେ ରଘୁମଣି ଲୋ । କୋଇଲି ଶୁଣ ଲୋ । ୧୨ ।

ଏ ମହା କାର୍ତ୍ତିକ ମାସ ଭଣିଲେ ଶଙ୍କର ଦାସ ।
ସୀତା ସଙ୍ଗେ ଯେଉଁ ରଘୁକୁଳମଣି
ଭୋଗକଲେ ବାରମାସ ଲୋ । କୋଇଲି ଶୁଣ ଲୋ । ୧୩ ।

□□□

ଦେବଦୁର୍ଲ୍ଲଭ ଦାସ

## ରୁକ୍ମିଣୀଙ୍କ ପ୍ରଶ୍ନ

### ( ରହସ୍ୟମଞ୍ଜରୀ : ଦ୍ୱିତୀୟ ଛାନ୍ଦ )

( ବସନ୍ତ ସରେଣ ଗୀତ୍ୟତେ । କଲଣା ବାଣୀ ।)

ଏକଦିନେ ଏକାନ୍ତ ମନ୍ଦିରେ ଜଗନ୍ନାଥ ।
ମଣିମୟ ପଲଙ୍କ ଉପରେ ବିରାଜିତ ।
ବେଳ ଜାଣି ରୁକ୍ମିଣୀ ରମଣୀ-ଶିରୋମଣି ।
ପଦ୍ମ ପାଶେ ଏକଲି ପ୍ରବେଶ ଠାକୁରାଣୀ । ୧ ।

ଶିରେ ଶିରିଚରଣ ଲଗାଇ ଶୁଭ୍ରକେଶୀ ।
କ୍ରୋଧେ ଗଦଗଦ ବାମା ବଚନ ପ୍ରକାଶି ।
ଶୁଣ ପ୍ରାଣେଶ୍ୱର ଏକ ବଚନ ମୋହୋର ।
କହିବାକୁ ଭୟେ ମନେ ବହୁତ ବିସ୍ମର । ୨ ।

ବହୁରୁଁ ବହୁରୁଁ ତ ବହୁତ ଦିନ ଗଲା ।
କହିବାକୁ ଶକ୍ୟ ଏଥି କାହାର ନୋହିଲା ।
ମାତା ପିତା ହରସେନ ଉଦ୍ଧବାଦ୍ଧ ଯେତେ ।
ସବୁରିଙ୍କ ହୃଦେ ପ୍ରଭୁ ଚଳନ୍ତି ଅପ୍ରମିତେ । ୩ ।

---

୧—୨ :—ମଣିମୟ କଣୟ ପଲଙ୍କେ—ଜ
୨—୧ :—ରାମା । (କ, ଖ, ଚ)

ଷୋଳ ସହସ୍ରଏ ଅଷ୍ଟ ନାୟିକା ଯୁବତୀ ।
ଅଛନ୍ତି ଅନେକ ବାମା ସୁଜାଣ ସୁମତି ।
ସକଳ କାମିନୀଙ୍କ ବଳକଳାବ ଦେଖି ।
ଅଇଲ୍ ଗ୍ରାମକୁ ଭୟେ ସଙ୍କୋଚ ଉପେକ୍ଷି ।୪।

କସ ଅର୍ଥେ ପ୍ରଭୁ ହେ ବରସ ରୂମ୍ଭ ମନ ।
କେହ୍ନୁଣସି ସ୍ତ୍ରୀକୁ ନ କର ଅବଧାନ ।
ଦ୍ୱାରବତୀ ଭୁବନେ କେବଣ ସୁଖ ନାହିଁ ।
ସବସୁଖ ତେଜ ମନ ରମାଇଲ କାହିଁ ।୫।

ହାତୀ ଛତ୍ରୀ ପାଦାନ୍ତ ସାଉତ ରଥ ରଥୀ ।
ସାତବଂଶ ଆଦ ରୂମ୍ଭ କେ କହୁ ସମ୍ପତ୍ତି ।
ଖେଡ଼ ହୋଡ଼ ନଟ ଭାଟ ନାନାରଙ୍ଗ କେଳ ।
ଗାବନ୍ତି ଗନ୍ଧର୍ବେ ଯେ ନାଚନ୍ତି ବିଦ୍ୟାଧରୀ ।୬।

ଖଟଣୀ ସେବକ ଯେତେ ଗ୍ରାମରେ ଅଛନ୍ତି ।
ଯେ ଯାହାର ବେଳକାଳେ ଆଜ୍ଞା ନ ଲଙ୍ଘନ୍ତି ।
ଯୂଥ ଯୂଥ ଅଭ୍ରଙ୍ଗୀ ପ୍ରଧାନ ନାୟିକା ।
ନବୀନ ଯୌବନୀ ରସ ରହସ୍ୟେ ଅଧିକା ।୭।

ନୃତ୍ୟ ଗୀତ ବାଦ୍ୟ ରସ ସଙ୍ଗେ କୁତୂହଳୀ ।
ତ୍ରି ଜଗମୋହନୀ ଯେ ଅଟନ୍ତି ସବବାଳୀ ।
ମୁଖ ତୋଳି ନ ଗୃହଁ ନ କହ କର୍ମା କଥା ।
ହାସ୍ୟ ରସ ଦେଖିଲେ ତଳକୁ ପୋତ ମଥା ।୮।

ହୁଁ ହୁଁ କାର କରଣ ନଶ୍ୱାସ ଉଚେ ଛାଡ଼ ।
କାହାକୁ କଛୁ ନ କହ କଥା କର ଗାଢ଼ ।
କାହାର ନ ସେନ ସେବା କ୍ଷଣକେ ବିରଙ୍ଗ ।
ଶୟନ ବେସନ ସୁଖ ସବୁ ଅପ୍ରସଙ୍ଗ ।୯।

---

୫—୨ :—କେହ୍ନୁଣିହ (ଚ)
୬—୩ :—ଷୋଟ, (ଘ) ଭଟ—
୭—୨ :—"ପ୍ରଭୁମନ ହରିବାକୁ ଯୋଗତା ଅଛନ୍ତି (ଘ, ଚ, ଜ)
୭—୪ :—ଯୌବନୀ ରସ ରଭସେ (ଚ, ଜ )
୯—୧ :—ଫଁଫୁକାର···

ଚତୁଃସମ ଲେପନ୍ତେ ଚଂଦନ ମାଡ଼ୁ ଶୁଅ ।
ଲେଉଟାଇ ଲୋଡ଼ନ୍ତେ ମନ୍ଦରୁ ଗରୁ ହୁଅ ।
କ୍ଷଣେ ଉଠ କ୍ଷଣେ ବସ କ୍ଷଣେ ହେଠମାଥ ।
କ୍ଷଣେ କ୍ଷଣେ ହସ୍ତେ କପାଳେ ମାର ହାତ ।୧୦।

ଉର୍ଦ୍ଧ୍ୱମୁଖୀ ହୋଇଣ ନିଃଶ୍ୱାସ ତୋଳ ଗୁଢ଼ ।
କର ଶିରେ କଗୃଢ଼ ପଲଙ୍କତଳେ ପଡ଼ ।
କି ଅର୍ଥେ ଶରୀର ଖୀନ କର ଦାମୋଦର ।
ଦଣ୍ଡମଣ୍ଡ କର ପ୍ରଭୁ ରୋଷ ପରିହର ।୧୧।

ଯେବେ ନ କହିବ ପ୍ରଭୁ ଏ ସନ୍ଧ ବିଚାର ।
ମରିବୁଁ ସକଳ ବାମା ସତ୍ୟ ଏ ଆମ୍ଭର ।
ରୁକ୍ମିଣୀ ବିନୟ-କୋଧ ଶୁଣି ଜଗନ୍ନାଥ ।
ଉଠି ବସି ତୋଳି ପ୍ରଭୁ କଲେ କୋଳାଗତ ।୧୨।

ପ୍ରଭୁ ଠାକୁରାଣୀ ଏକ ଆସନେ ବିଜୟେ ।
ପ୍ରବୋଧନା ବଚନ କହନ୍ତି ଦେବରାଏ ।
ଲକ୍ଷ୍ମୀନାରାୟଣ ବେନି ଚରଣକମଳେ ।
ସର୍ବଦା ଚିନ୍ତୁଇ ଦେବ ନୟନ ଭ୍ରସଲେ ।୧୩।

ଇତି ଶ୍ରୀ ରହସ୍ୟମଞ୍ଜରୀ ଦ୍ୱିତୀୟ ଛାନ୍ଦେ,
ରୁକ୍ମିଣୀରମଣ ଶ୍ରୀଚରଣ ବନ୍ଦେ,
ତୃତୀୟ ଛାନ୍ଦ ବର୍ଣ୍ଣିନେ କେବଣ ବୃତ୍ତାନ୍ତ,
କହିବାକୁ ଆଜ୍ଞା ହେଉଂ ରୁକ୍ମିଣୀ ଦେବୀର କାନ୍ତ ।

□□□

ଶିଶୁ ଶଙ୍କର ଦାସ

# ଉଷା ଅନିରୁଦ୍ଧ

## (ଉଷାଭିଳାଷ : ଷଷ୍ଠ ଛାନ୍ଦ)

(ଢଣ—ମଙ୍ଗଳ ଗୁଜ୍ଜରୀ : ନଳିନୀଗୌଡ଼ା)

ଭାବକୁ ନିକଟ ଯେ ଜଗତଜନ ବନ୍ଧୁ
ଆରତ ଜନର ସେ କରୁଣାମୟ ସିନ୍ଧୁ ଗୋ ।
ତାହାଙ୍କ ଚରଣ ମନେ ଧରି ସହଚରୀ
ଉଷା ମୁଖ ଚାହିଁ ରସ ବଚନ ପଚାରି ଗୋ ।
ଅନାଦି ପୁରୁଷ ଯାର ଆଦି ଅନ୍ତ ନାହିଁ
ଅବନୀ ଜନମ ହେଲେ କ୍ଷିତିଭାର ପାଇଁ ଗୋ ।
ମଥୁରା ନଗରେ ଜାତ ବସୁଦେବ ଘରେ
ଗୋପରେ ବଢ଼ିଲେ ଯାହିଁ କଂସରାଜା ଡରେ ଗୋ । ୪
ପୂତନା ଶକଟା ବତ୍ସ ବକା ଅଘାସୁର
ପ୍ରଲମ୍ବା ଧେନୁକା ତୃଣା କେଶୀ ମହାବୀର ଗୋ ।
ଶଙ୍ଖଚୂଡ଼ ବେଦଚୋର ବ୍ୟୋମାସୁର ଆଦି
ଲୀଳାମାତ୍ରେ ମାରିଲେ ଅମରପୁରବାସୀ ଗୋ ।
କୁବେରନନ୍ଦନେ କଲେ ଶାପରୁ ମୁକତ
ଗିରି ତୋଳି ସୁରପତି ଗର୍ବ କଲେ ହତ ଗୋ ।
ଶିଶୁ ବତ୍ସ ହରଣ ହାରିଲା ଯାକୁ ବ୍ରହ୍ମା
କାଳୀ ଦଳି ରୁହାଇଲେ କାଳିନ୍ଦୀ ମହିମା ଗୋ । ୮
ଭାବକୁ ନିକଟ ଯେ କରୁଣାମୟ ରାଶି
ରମିଲେ ଗୋପରମଣୀ ଭାବରଙ୍ଗେ ତୋଷି ଗୋ ।
କୁବଳୟା କରୀ ଅଷ୍ଟମଲ୍ଲ ମୂଳେ କଂସ
ଲୀଳାମାତ୍ରେ ମାରି ରଖିଲେ ଯଦୁବଂଶ ଗୋ ।
ଜରାସନ୍ଧ ରାଜାକୁ ଅଠରବେଳ ଜିଣି
କପଟେ କାଳଦମନ ନାଶି ଯଦୁମଣି ଗୋ ।
କୁଶସ୍ଥଳୀ ପୁର ସିନ୍ଧୁ ଭିତରେ ଉତ୍ତମ
ନଗର ରଚିଲେ ତହିଁ ଅତି ମନୋରମ ଗୋ । ୧୨

ଦ୍ୱୋଳ ସପ୍ତ ଶଏ ଅଷ୍ଟ ଶୂର ରାଜଜେମା
ଅଷ୍ଟପାଟବଂଶୀ ଶ୍ରେଷ୍ଠ କ୍ଷିତ୍ମଙ୍କର ଜେମା ଗୋ ।
ତାହାଙ୍କର ଜ୍ୟେଷ୍ଠ ପୁତ୍ର ପ୍ରତକ୍ଷେ ମଦନ,
ଅନିରୁଦ୍ଧ ଦେଖିଲୁ ତୁ କାମର ନନ୍ଦନ ଗୋ ।
ଅଗମିତ ପୁରଂଦାର ଦୁର୍ଲ୍ଲଭ ଦର୍ଶନ
ତୋହର ବେଦନା ଅର୍ଥେ କରିବ ଶମନ ଗୋ ।
ପାରିଲେ ଆଣିମି ମନ ନ କର କାତର
ଶୁଣିଣ ସୁନ୍ଦରୀ ବହେ ନୟନରୁ ନୀର ଗୋ । ୬
ଚରଣ ଧରଇ ସଖି ! ମୁହିଁ ମନ୍ଦଭାଗୀ
ଲାଜ ଉପେକ୍ଷିଲି ମୁଁ ଦୁର୍ଲ୍ଲଭ ଜନ ଲାଗି ଗୋ ।
ବିଲମ୍ବ ନ କର ଚଳ ପଥ ହେଉ ଶୁଭ
ଲକ୍ଷ୍ମୀପତି ମନୋରଥ କରନ୍ତୁ ସୁଲଭ ଗୋ ।
ପରମ ମଙ୍ଗଳର ମଙ୍ଗଳ ଜଗନ୍ନାଥ
ତାହାଙ୍କୁ ସୁମର ଚଳ ଦ୍ୱାରାବତୀ ପଥ ଗୋ ।
ସଦାଶିବ ଗଉରୀ ହେରମ୍ବ ହୋନ୍ତୁ ସାହା
ବିଲମ୍ବ ନ ହୋଇ ବେଗେ ଆଣ ପ୍ରାଣନାହା ଗୋ । ୧୦
ଶୁଣିଣ ସାନନ୍ଦ ମନେ କୁମ୍ଭାଣ୍ଡଦୁହିତା
କମଳ-ଦଳ-ଲୋଚନ ମନେ କଲା ଚିନ୍ତା ଗୋ ।
ମଙ୍ଗଳ ସଙ୍କେତ ତାକୁ ହୋଇଲା ଦର୍ଶନ
ଅନ୍ତରୀକ୍ଷେ ଚଳିଗଲା ଦ୍ୱାରକାଭୁବନ ଗୋ ।
ସମୁଦ୍ର ନିକଟେ ରହି ନ ପାରଇ ପଶି
ମନେ ଭାଳୁଁ, ଭେଟିଲା ନାରଦ ମହାଋଷି ଗୋ ।
ମୁନିଙ୍କି କାର୍ପୁଣ୍ୟ ହୋଇ ବୋଲଇ ଗୋସାଇଁ
କେମନ୍ତେ ଦ୍ୱାରକା ମୁହିଁ ପାରିବଇଁ ଯାଇ ଗୋ । ୧୪
ସର୍ବଜ୍ଞ ପୁରୁଷ ସେ କହିଲେ ମନ୍ତ୍ରସାର
ତାହା ଘେନି ପଶିଲା ସେ କୃଷ୍ଣର ନଗର ଗୋ ।
ପୁରେ ପୁରେ ଅନୁସରି ଲୋଡ଼ଇ ତରୁଣୀ
ଅନିରୁଦ୍ଧ ଉନ୍ମତ ହୃଷାଭାବ ଗୁଣି ଗୋ ।
ରଜନୀ-ସପନ-ଧ୍ୟାନ ପଲଙ୍କରେ ବସି
ବିଷମ୍ବ ବିଳାପ ରସେ କେବେହେଁ ନ ରସି ଗୋ ।
ଉଠଇ ବସଇ ହରେ ତାପଇ ଚନ୍ଦନ
ଶୀତଳ ସମୀର ଇଚ୍ଛେ ମଦନ-ନନ୍ଦନ ଗୋ । ୧୮

ବିଳାସିନୀ-ବୃନ୍ଦ ବେଢ଼ି ନୃତ୍ୟଗୀତ ଗାଇ
ବିମୁଖ କୁମରମଣି ରମଣୀ ନ ପାଇ ଗୋ ।
କୋକିଳ ବଚନ ଶୁଣି ଚମକଇ ଦେହ
ସପନ ସ୍ମରଣ କ୍ଷଣେ କ୍ଷଣେ ହୋଏ ମୋହ ଗୋ ।
ଗୁପତ ବେଦନା ତାର ନ ଜାଣଇ କେହି
ଚିତ୍ରଲେଖା ହରଷ; ଚକିତ ହୋଏ ଗୃହି ଗୋ ।
ମନ୍ତ୍ରବଳେ ପଲଙ୍କ ସହିତ ଘେନି ଶିରେ
ଦିବସ ଶେଷେଣ ମିଳେ ଶୋଣିତ ନଗରେ ଗୋ । ୩୨

ଅନ୍ତଃପୁରେ ଉଷାର ମେଢ଼ରେ କଲା ନେଇ
ପଲଙ୍କ ତେଜିଣ ଭୂମି ତଳେ ଅଛୁ ଶୋଇ ଗୋ ।
ବିସ୍ମୟ ଆନନ୍ଦ ଦେଖି ମନସିଜ-ସୁତ
ପଲଙ୍କୁ ଉଠୁଣ ବୀର ହୋଏ ଉପଗତ ଗୋ ।
ବିରହେ ବିଧୁର ଶିଶୁ କୁରଙ୍ଗୀ-ଲୋଚନୀ
ଅନିରୁଦ୍ଧ ସମୀପେ ବସିଲା ସ୍ନେହ ଘେନି ଗୋ ।
ଲାଜ ଭୟ କାତର ମନରେ ହୋଏ ଜାତ
ମଦନ ବାଧିଲା ତାକୁ ହୋଇଲା ଉଦ୍ଧତ ଯେ । ୩୬

ଅଧରେ ଅଧର ଦେଇ ଭାଷେ ମୃଦୁବାଣୀ
ପ୍ରାଣବନ୍ଧୁ ହସି କଥା କହସି ମିଳଣି ଗୋ ।
ଚକିତ ରମଣୀ ଲାଜେ ହେଠମାଥେ ବସି
ରାହୁ ଭୟେ ଶଶୀ କି କଣ୍ଠେ ଗିରି ପଶି ଗୋ ।
ଦ୍ୱାରକା-ପଦ ଚରଣେ ଦାସ ପଣ୍ଡଦାସ
କହଇ ଶିଶୁଙ୍କର ଉଷା-ଅଭିଳାଷ ଗୋ । ୩୧

□□□

କାର୍ତ୍ତିକ ଦାସ

# ରୁକ୍ମଣୀବାହା

## ( ସପ୍ତମ ଛାନ୍ଦ )

ଏଥୁ ଅନନ୍ତରେ ସପତମ ଛନ୍ଦ ଗୀତ
ବାହାଘରେ ଆନନ୍ଦ ଉତ୍ସବ ନୃତ୍ୟ ଗୀତ
ଅନେକ ନୃପତି ତୂର୍ଯ୍ୟ, ବାଦ୍ୟମାନ ବାଜେ
ରଥୀ, ହାତୀ, ରାଉତ, ମାହୁନ୍ତ ବଳ ସାଜେ । ୧ ।
ରତ୍ନ କଞ୍ଚୁକୃତ ପାଟର ଯେ ଶାଢ଼ୀଘର
ନାମଗିରି ଟେସି ଟେକି କଲେକ ଉହାଡ଼
ଚନ୍ଦ୍ରାତପ ଚଉପାଶେ ଝାମର ମଣ୍ଡିଲେ
ଅନେକ ଅହ୍ଲାଦ ଝୁମୁଣ୍ଡିଆ କରାଇଲେ । ୨ ।
ସୁବର୍ଣ୍ଣେ ଗଢ଼ିଲେ ବେଦି ସ୍ଫଟିକ ପାବଚ୍ଛ
ଚଉକୋଣେ ନେଇଣ ଥୋଇଲେ ଦଧିମାଛ ।
ସୁବର୍ଣ୍ଣ କୁମ୍ଭ ଉପରେ ଚୂତପତ୍ର ଡାଳ
ତଥି ଉପରେ ଥୋଇଲେ ନେଇ ନଟୀକାଳ । ୩ ।
ରତ୍ନସିଂହାସନ ତଥି ଠାବେଣ ଠାବେଣ
ବସିଲେକ ଅନେକ ଆସିଣ ନୃପଗଣ
ଶିଶୁପାଳ ବରବେଶ ହୋଇକରି ଆସେ
ଶଏ ଘୋଡ଼ା ବାର ଢୋଲ ବାଜୁଅଛି ପାଶେ । ୪ ।
ଦୁଇପାଖେ ଅଛଇ ସହସ୍ର ପାଟଛତ୍ର
ବରବେଶେ ଆସୁଅଛି ଦମଘୋଷ-ପୁତ୍ର
ଜରାସନ୍ଧ ବୋଲିଲା ରୁକ୍ମଣ ମୁହଁ ଚାହିଁ
ଘେନ ଆସ ବରକୁ ପାଛୋଟି ବେଗ ହୋଇ । ୫ ।
ଗଲାକ ରୁକ୍ମଣ ସଙ୍ଗେ ଘେନ ନିଜ ବଳ
ବାଟୁ ବରି ଘେନଣ ଅଇଲା ଶିଶୁପାଳ
ବସିଲାକ ଶିଶୁପାଳ ସଭାର ମଧ୍ୟେଣ
ଦେଖିଣ ହରଷ ହୋନ୍ତି ଦୁଷ୍ଟ ରାଜାଗଣ । ୬ ।

ଏମନ୍ତ କହୁଣ ତହୁଁ ଶୁଭିଲାକ ଗୋଳ
ଧାଇଁଣ ଅଛନ୍ତି ଲୋକେ କରଣ ଚହଳ,
କେ ବୋଲନ୍ତି କେଣେ ଗଲ କେ ବୋଲନ୍ତି କାହିଁ
ବାରତା କହନ୍ତି ଏକ ଆରେକକୁ ଗୁହିଁ । ୭ ।
ଗୋବିନ୍ଦେ ଅଇଲେ ବୋଲି ଶୁଣିଲେଁକ ତହିଁ
ବଳୀମାନଙ୍କ ଗଲ ଗର୍ଭସ୍ରାବ ହୋଇ,
କଣ୍ଠୀରବ ଧ୍ୱନି ଶୁଣି ଯେସନେ ହରଣୀ
ତେସନେକ ପସ୍ତେ ହୋଇଲେ ନୃପମଣି । ୮ ।
ଷତ୍ରିଗଣେ ଆବୋରଣ ଜରାସନ୍ଧ କହେ
ତୁମ୍ଭେମାନେ ଭୟ କମ୍ପା ପାଉଛ ସଭଏଁ,
ବରଣ ନ ଥାଇ ଯେବେ ଅଇଲେ ଗୋପାଳ
ଏ କଥାକୁ ତୁମ୍ଭେମାନେ କାହିଁ ପାଇଁ ଭାଳ । ୯ ।
ଯେ ଯାହାର ବଳମାନ ଭୁଅ ପାଣ୍ଟିଥିବ।
ଆମ୍ଭେମାନେ ବସିଥାଇଁ ବିଭା କରାଇବା,
ଦୁଷ୍ଟପଣ ଆଚରିବ ଯେବେ ଚକ୍ରଧର
ତେବେ ଆମ୍ଭେମାନେ କର ପାଶ ତ ସମର । ୧୦ ।
ରୁକ୍ମଣକୁ ବୋଇଲେ କନ୍ୟାକୁ ଘେନ ଆସ
ବରଣ ହୋଇବ ତ ବଢ଼ିଲା ଗନ୍ଧବାସ,
ରୁକ୍ମଣ ବୋଇଲା କନ୍ୟା ଅର୍ଘ୍ୟସ୍ଥାନେ ସିବ
ରଥୀ, ହାତୀ, ଶତ ଶତ ତାର ସଙ୍ଗେ ଥିବ । ୧୧ ।
ଭବାନୀଙ୍କ ଦର୍ଶନ କରାଇ ବେଗେ ଆଣ
ଦାସୀଙ୍କୁ ରାଇଣ ଆଜ୍ଞା ଦେଲାକ ରୁକ୍ମଣ,
ତତକ୍ଷଣେ ନିଜ ପରିବାରମାନେ ଗଲେ
ରୁକ୍ମଣୀକି ଗନ୍ଧଜଳେ ସ୍ନାନ କରାଇଲେ । ୧୨ ।
ପିନ୍ଧାଇଲେ ଅପୂର୍ବ ପଡନୀ ସୀନବାସ
ମଲ୍ଲିକା କୁସୁମେ ଭରି ସଜାଡ଼ିଲେ କେଶ
କପାଳେ ତିଳକ ଅଙ୍ଗେ ଚନ୍ଦନ ଲେପିଣ
ମୁକୁତା ସୀମନ୍ତି ହେବ ତାଙ୍କର ଭୂଷଣ । ୧୩ ।
ସୁବେଶ କରାଇ ଦାସୀ ପହଣ୍ଡ ମଣୋଇ
ହାନ୍ଦୋଳା ଉପରେ ବେଗେ କରାଇଲେ ନେଇ
ପାଟଛତ୍ର ବିମଳ ଆଗନ୍ତୁ ଫରହର
ଦୁଇ ପାଶେ ସନାବେଣ୍ଟ ସହସ୍ରେ ଚାମର । ୧୪ ।

ମୂଦୁସୁଲମାନେ ସଙ୍ଗେ ଅଛନ୍ତି ଗୋଡ଼ାଇ
ଧୂପ ଦୀପ ଗନ୍ଧ ପୁଷ୍ପ ନଇବେଦ୍ୟ ବନ୍ଧ,
ଅକ୍ଷତ ତାମ୍ବୁଲ ଦୀପ ବସାଇଣ ଥାଳି
ଗାବନ୍ତି ମଙ୍ଗଳ ଗୀତ ଦେଇ ହୁଳହୁଳି । ୧୫ ।
ଦାଣ୍ଡ ପହରାଇଣ ଚନ୍ଦନ ଛେଡ଼ା ଦେଇ
ରୁକ୍ମିଣୀ ଚଳିବା ପଥେ ପୁଷ୍ପ ବରଷଇ,
ଡାକୁଛନ୍ତି ପରବାସୀ ମହିମା ଗୋ ମାୟେ
ଭଗବତୀ ମନ୍ଦିର ଦ୍ୱାରେଣ ଯାଇ ହୋଏ । ୧୬ ।
ଅମ୍ବିକାପୁରକୁ ସନ୍ଧ୍ୟେ ଗଲେକ ରୁକ୍ମିଣୀ
ଶ୍ରୀକୃଷ୍ଣ ନନ୍ଦଘୋଷ ବାହୁଲେ ତାହା ଶୁଣି,
ଶଏପୁର ହୋଇଣ ପଡ଼ିଛୁ ପଟୁଆର
ତହିଁ ଯାଇ ବଜସ୍ୱେ କଲେକ ଚକ୍ରଧର । ୧୭ ।
ହାନ୍ଦୋଳା ଉପରୁ ଓହ୍ଲାଇଲେ କେମାଦେଇ
ରତ୍ନମୟ କଠାଉ ଚରଣେ ଆଣି ଦେଇ,
ଚରଣ ଧୋଇଣ ତହିଁ ଆଗ୍ରେବନ ସାର
ପତିବ୍ରତା ବ୍ରାହ୍ମଣୀମାନଙ୍କ କର ଧର । ୧୮ ।
ଦେଉଳ ଭିତରେ ଯାଇ ପଶିଲେ ରୁକ୍ମିଣୀ
ସାଷ୍ଟାଙ୍ଗେ ପାୟେ ପଡ଼ିଣ ସ୍ତୁତିକଲେ ପୁଣି,
ଜୟ ଜୟ ଦେବୀ ମାଗୋ ଅନାଦି ଶକତି
ଗିରୀଶ-ନନ୍ଦନୀ ଗଉରୀ ଭଗବତୀ । ୧୯ ।
ଚଣ୍ଡ, ମୁଣ୍ଡ ନାଶିନୀ ମହିଷା ଦର୍ପହାରୀ
ପ୍ରସନ୍ନ ହୋଇବା ମୋତେ ଦେବୀ ଶାକମ୍ବରୀ,
ତୁମେ ଦେବୀ ଅନାଦି ଅଭୟା ମହାମାୟେ
ଶିଶୁପାଳ ମୁଖୁଁ ମୋତେ କର ଗୋ ଅଭୟେ । ୨୦ ।
ଏମନ୍ତ ପ୍ରକାରେଣ ଅନେକ ସ୍ତୁତି କଲେ
ଚନ୍ଦନ ଲେପିଣ ଗଳେ ପୁଷ୍ପମାଳା ଦେଲେ,
ଧୂପ ଦୀପ ଗନ୍ଧ ପୁଷ୍ପ ନଇବେଦ୍ୟ ଦେଇ
କାମନା କଲେକ ବାଳୀ କୃଷ୍ଣ ପାଇବଇଁ । ୨୧ ।
ଏମନ୍ତେଣ ପ୍ରସନ୍ନ ହୋଇଲେ ମହାମାୟେ,
ପାଇବ କୃଷ୍ଣଙ୍କୁ ଏଥେ ନାହିଁ ଗୋ ସଂଶୟେ
ପୁଣି ପାଦତଳେ ପଡ଼ି ଉଠିଣ ରୁକ୍ମିଣୀ
ବାହୁଡ଼ିବା ବେଳକୁ ମଙ୍ଗଳ କଲେ ପୁଣି । ୨୨ ।

ସଧୀରେ ସଧୀରେ ବାଳୀ ପଂହଣ୍ତ ମଣାଇ
କମଳନୟନରୂପ ମନେ ଅଛୁ ଧ୍ୟାୟି,
ଘନ ଘନ ଫୁରଇ ତା ବାମ ବାହୁ ଆଖି
ଦେଉଳରୁ ବାହାର ହୋଇଲେ ଚନ୍ଦ୍ରମୁଖୀ । ୧୩ ।
କୃଷ୍ଣଙ୍କୁ ନ ଦେଖି ତାର ଦେହେ ଜ୍ଞାନ ନାହିଁ
ବଦନ ତୋଳଣ ବାଳୀ ଦେଲକ ଅନାଇ,
ଦେଖିଲକ ଅଭିନବ ମଦନସୁନ୍ଦର
ନୟନେ ନୟନ ଭେଟ ପଡ଼ିଲା ତାହାରଁ । ୧୪ ।
ଅତି ବେଗେ ରଥରୁ ଓହ୍ଲାଇ ଯଦୁସାଇଁ
ରୁକ୍ମଣୀଙ୍କ କର କରେ ଧଇଲେକ ଯାଇଁ
ଅଶ୍ୱ ଗଜ ରଥବର ଅଛନ୍ତି ଅପାର
ନେଇ ବସାଇଲେ ନନ୍ଦଘୋଷର ଉପର । ୧୫ ।
ଯେସନେକ କଣ୍ଠୀରବ ନଅଇ ହରଣୀ
ତେସନେକ କଣେଣ ନେଲେ ଚକ୍ରପାଣି,
ନାଗମଧ୍ୟୁଁ ଯେସନେ ଗରୁଡ଼ ନେଇ ବଳି
ତେସନେ କଣେଣ ଘେନିଗଲେ ବନମାଳୀ । ୧୬ ।
ନେଲା, ନେଲା, ଗଲା, ଗଲା, ବାଜିଲାକ ହେଲ
ଧାଇଁଲେକ ରଥୀ ହାଥୀ ନୃପତି ସକଳ,
ଜରାସନ୍ଧ ବଳ ଘେନି ଅଛଇ ଗୋଡ଼ାଇ
ଆଗେ ଓଗାଳିଲେ ଆସି ରେବତୀର ସାଇଁ । ୧୭ ।
ରୁକ୍ମଣୀଙ୍କୁ ଘେନିଣ ସେ ଗଲେ ଚକ୍ରଧର
ହାଥୀ ହାଥୀ ରଥେ ରଥେ ଲଗିଲା ସମର,
ନଗରଲୋକେ ବୋଲନ୍ତି ଯେ ଯଦୁଙ୍କ ସ୍ୱଜନ
ବିଧାତା କେମନ୍ତେ ଆନ କରିବ ଘଟଣ । ୧୮ ।
ବେଦିର ଉପରେ ଆଜ ବସିଛ କି ପାଇଁ
ଜଳୁଜଳୁ ମୁଖେ ଲାଜ ବଳୁଛୁ ତ ନାହିଁ,
ବୋଲୁଛନ୍ତି ଆମ୍ଭେ ବଡ଼ରାଜା ବଳୀୟାର
କୋଡ଼ୁଁ ଘେନି ଯାଉଛନ୍ତି କହଆ ଏହାର । ୧୯ ।



ଦ୍ୱାରକା ଦାସ

# ଶରୀରଭେଦ ଚଉତିଶା

କହନ୍ତ ଉଦ୍ଧବକୁ ହରି । କର ଆସନ ଦୃଢ଼କରି ।୧।
ଖସିଲ ଅଣଶ୍ୱାଶ ବାଇ । ଖିଣ ନାଳରେ ଖଞ୍ଜ ନେଇଂ ।୨।
ଗଙ୍ଗାକୁ ବୁହାଅ ଢ଼କାଣି । ଗଗନ ଶିଖେ ଟେକ ପାଣି ।୩।
ଘାଟମୁଣ୍ଡରେ ବନ୍ଧ ବାନ୍ଧ । ଘେନ ତ୍ରିକୂଟକୁ ନିରୋଧ ।୪।
ଙିକାର ମଧ୍ୟେ ରଖ ହେତୁ । ଉଡ଼ନ୍ତା ପକ୍ଷୀକୁ ଧର ତୁ ।୫।
ଚଣ୍ଡ ପବନ ମହାବଳୀ । ଚିତା ଚକ୍ଷୁରେ ରଖ ତୋଳି ।୬।
ଛଡ଼ ଚନ୍ଦକୁ କର ଏକ । ଛିଦ୍ରକୁ ନବ ଦ୍ୱାରପାକ ।୭।
ଜୀବକୁ ପରମେ ପୂରାଇ । ଜଗ ବସିବୁ ଜ୍ୟୋତି ସ୍ତମ୍ଭି ।୮।
ଝର ପଶ୍ଚିମେ କର ଠଣା । ଝଗଡ଼ା ସରଇ ତୋ ସିନା ।୯।
ନାଦବିନ୍ଦୁକୁ ମିଶାଇବୁ । ନାସା ଅଗ୍ରକୁ ଦୃଷ୍ଟି ଦେବୁ ।୧୦।
ଟେକ ତୁ ହେତୁକୁ ଉପରେ । ଟଳିବ ନାହିଁ ନବଦ୍ୱାରେ ।୧୧।
ଠାବ ତୁ କଲେ ଅନାହତେ । ଠାବେ ଦେଖିବୁ ବୀର ମୋତେ ।୧୨।
ଡମ୍ବରୁ ଖୋଲ ଫିଟାଇବୁ । ଡୋଳାପିତୁଳାକୁ ଦେଖିବୁ ।୧୩।
ଢାଙ୍କୁଣି ଫିଟିଲେ ତୋହର । ଢାଳେ ଦେଖିବୁ ମୋ ଶରୀର ।୧୪।
ଅଣ ଅକ୍ଷରେ କର ଲକ୍ଷ୍ମୀ । ଅଦୃଶ୍ୟ ଭାବ ମୁଁ ଅଟଇ ।୧୫।
ତନଙ୍କ ଏକ କର ଅନା । ତେବେ ଦେଖିବୁ ମୋ ଭାବନା ।୧୬।
ଥଏ ତୁ କଲେ ଥକା ମନ । ଥାନେ ଦେଖିବୁ ଭଗବାନ ।୧୭।
ଦଅ ତୁ ହେତୁ ବୁଦ୍ଧି ତୋର । ଦେଖିବୁ ସାକ୍ଷାତେ ଈଶ୍ୱର ।୧୮।
ଧ୍ୟାନ ଧାରଣା ତୁ ଉପେଖ । ଧ୍ୟାନ ନିଶ୍ଚଳେ ମନ ରଖ ।୧୯।
ନିଶ୍ଚଳ ହେଲେ ତୋର ଧ୍ୟାନ । ନିରଂଜନକୁ ଦରଶନ ।୨୦।
ପୂରକ କୁମ୍ଭକ ସାଧନ । ପୂରି ରହିଛି ତୋର ମନ ।୨୧।
ଫୁଟାଅ ଖୋଲ ଡମ୍ବରରେ । ଫେରୁ ନ ଫେରୁ ମୂଙ୍ଗ ନୀରେ ।୨୨।
ବ୍ରହ୍ମ ମୁଁ ନିଶ୍ଚେ ଅବତାର । ବସିଛୁ ତନରୂପ ମୋର ।୨୩।
ଭାବ ତୁ ହଂସ ମନ୍ତ୍ର ଧରି । ଭ୍ରୂସ୍ଥାନ ମଧ୍ୟେ ହେତୁକରି ।୨୪।
ମୃଣାଳ ସୂତ୍ର ମାର୍ଗ ଜ୍ୟୋତି । ମହାଶୂନ୍ୟରୁ ଉତପତି ।୨୫।
ଯମୂତଜଣା·କଳେବର । ଯୋଗେ ଦେଖିବୁ ମୋ ଶରୀର ।୨୬।

ରାଜୀବଲୋଚନ ସୁନ୍ଦର । ରଙ୍ଗା ଅଧର ଚକ୍ରଧର । ୨୭ ।
ଲଳିତ ଶଙ୍ଖ ଚକ୍ର ଗଦା । ଚତୁର ଭୁଜେ ଶୋହେ ସଦା । ୨୮ ।
ବଇଜୟନ୍ତୀ ମାଳା ଗଳେ । ବକ୍ଷସ୍ଥଳରେ ସଦା ଲୋଳେ । ୨୯ ।
ଶ୍ରୀବତ୍ସ-ଚିହ୍ନ ପୀତବାସ । ଦହନ୍ତେ ଗୋପାଳ ମୋ ବେଶ । ୩୦ ।
ସେ ରୂପ ନୟନେ ଦେଖିବୁ । ସକଳ ଧାପୁଁ ନିସ୍ତରିବୁ । ୩୧ ।
ସବୁ ମଣିବୁ ମୋହମୟ । ସକଳ ମୋହର ପରାସ୍ତ । ୩୨ ।
ହରର ବଚନେ ଉଦ୍ଧବ । ହୋଇଲେ ଶତେକ ପ୍ରଲମ୍ବ । ୩୩ ।
ଛନ୍ଦେ କହଇ ଦ୍ୱାରକା । ତୁଟୁ ମୋ ସଂସାର ଦକା । ୩୪ ।

□□□

ଧନକୃଷ୍ଣ ଦାସ

## ଉଦ୍ଧବ-ଗୋପୀ ସମ୍ବାଦ

( ରସକଲ୍ଲୋଳ : ଦ୍ୱାତ୍ରିଂଶ ଛାନ୍ଦ )

( ରାଗ—ଚନ୍ଦ୍ରାଦେଶାକ୍ଷ )

କୃଷ୍ଣ-ଦୂତକୁ ବସାଇ ପାଶେ । କହନ୍ତି କେ ପଚାରନ୍ତି ତୋଷେ ।
କୃଷ୍ଣ କାମପାଳ ସମସ୍ତ କୁଶଳ କହ କହ ଆମ୍ଭଙ୍କୁ ହରଷେ ହେ । ଉଦ୍ଧବ । ୧ ।
କହ କପଟୀ ଅକ୍ରୂର କଥା । କରାଇଲା ଯେ ଏତେ ଅବସ୍ଥା ।
କଂସ ମହାପାତ୍ର ଅତି ହିଁ ଅନୀତି କରି ମରଗଲା ଦେଇ ବ୍ୟଥା ହେ । ଉଦ୍ଧବ । ୨ ।
କହ କୁବୁଜାଙ୍କ ସବୁ ଶୁଭ । କର୍ଣ୍ଣେ ଶୁଣିମାକୁ ଯା ଦୁର୍ଲ୍ଲଭ ।
କଂସ କଟକରେ ପ୍ରବେଶ ହେବାରେ କୃଷ୍ଣ ପାଇଛନ୍ତି ଯାହା ଲଭ ହେ । ଉଦ୍ଧବ । ୩ ।
କୋମଳରେ କହନ୍ତି ଉଦ୍ଧବ । କୁଶଳର ମନ୍ଦିର ମାଧବ ।
କେବଳ ତୁମର ବିରହେ ବନ୍ଧୁର ଭାବ କଥା ହିଁ ତାଙ୍କୁ ଅଭାବ ଗୋ । ସୁନ୍ଦରି । ୪ ।
କରି ଜପାମାଳୀ ତୁମ୍ଭ ଗୁଣ । କରିଅଛନ୍ତି ଶ୍ରୀଅଙ୍ଗ କ୍ଷୀଣ ।
କହିଲେ ପରତେ ନଯିବ ସେ ଯେତେ ପାଉଅଛନ୍ତି ମହା କଷଣ ଗୋ । ସୁନ୍ଦରି । ୫ ।
କାମକାଣ୍ଡକୁ ହେବାରୁ ଲକ୍ଷ । କଲେ ଅନ୍ତର ବିପକ୍ଷ ସୁଖ ।
କହିଲେ ତ ପ୍ରେମ ହେଉଛି ଉଦ୍‌ଗମ ପ୍ରୀତିକଲେ ହୁଏ ଏଡ଼େ ଦୁଃଖ ଗୋ । ସୁନ୍ଦରି ।୬।

କର୍ଣ୍ଣେ ଉଦ୍ଧବ ବଚନ ଶୁଣି । କ୍ରୋଧ କରି ବରଜରମଣୀ ।
କହିଲେ ସେବକବତ୍ସଳଙ୍କୁ ଲୋକ ଲୋକ ମଧ୍ୟେ ତାଙ୍କୁ ସିନା ଗଣି ହେ । ଉଦ୍ଧବ । ୭ ।
କେତେ ବିପତ୍ତିରୁ ନ ରଖିଲେ । କେତେ କେତେ ସୁଖ ସେ ନ ଦେଲେ ।
କର୍ମ ଅବଳଙ୍କୁ କୁବୁଜା ଫଳଙ୍କୁ କଂସ ନୃପତି ବଳଙ୍କୁ ଗଲେ ହେ । ଉଦ୍ଧବ । ୮ ।
କଂସ ପାଇଲା ଦୀର୍ଘ ଶୟନ । କର୍ମା ନଇଲେ ପଦ୍ମନୟନ ।
କହିଥିବା କଥା କରିବା ଅନ୍ୟଥା ପ୍ରଭୁଙ୍କର ଏ ନୋହେ ଅୟନ ହେ । ଉଦ୍ଧବ । ୯ ।
କଉଁ ଲୋକ ଆମ୍ଭେ ଗୋପନାରୀ । କଲେ ସେହି ସିନା ଏତେ ସରି ।
କେବେହେଁ ବିନାଶ ନ କରି ଯେ ବିଷବୃକ୍ଷ କରେ ଲଗାଇ କରି ହେ । ଉଦ୍ଧବ । ୧୦ ।
କୃଷ୍ଣ ନ ଜାଣନ୍ତି କଉଁ ନୀତି । କଲେ ଆମ୍ଭଠାରେ ତ ଅନୀତି ।
କୂଳରୁ ଛଡ଼ାଇ ଦୁଃଖରେ ବୁଡ଼ାଇ ଏଥି ପାଇଲେ କଉଁ କୀରତି ହେ । ଉଦ୍ଧବ । ୧୧ ।
କୃପାସିନ୍ଧୁ ନାମ ବନ୍ଦ କରି । କଣାଦାସୀଙ୍କି କୃପା ନ କରି ।
କୁସୁମ-ମାର୍ଗଣଠାରେ ଆମ୍ଭ ପ୍ରାଣ ଦେଇ ରହିଲେ ମଥୁରାପୁରୀ ହେ । ଉଦ୍ଧବ । ୧୨ ।
କାର୍ଯ୍ୟ ପାଇଲେ ଯେଉଁ ପୁରୁଷ । କାମିନୀଙ୍କି କରନ୍ତି ନିରାଶ ।
କେବେହେଁ ବିଶ୍ୱାସ ନଯିବ ପୀୟୂଷ ବୋଲିଦେଲେ ସେ ସାକ୍ଷାତେ ବିଷ ହେ । ଉଦ୍ଧବ ।।
କୋମଳରେ ସେ କହିଲେ ଯେତେ । କେତେବେଳେ ନ ଯିବ ପରତେ ।
କାଳେ ମନୋଭବ କଷ୍ଟ ଅନୁଭବ କରି ଖେଳିବ ଅନବରତେ ହେ । ଉଦ୍ଧବ । ୧୪ ।
କଲାଇଲେ ଯେତେ କରି ଆଶା । କଲୁ ସେହି ପ୍ରକାରେ ଭରସା ।
କିଛି ହିଁ ନୋହିଲା କେବଳ ହୋଇଗଲା ଯେହ୍ନେ ଶରଦେ ଚାତକ ଦଶା ହେ । ଉଦ୍ଧବ । ୧୫ ।
କଥା ଅମୃତଠାରୁ ମଧୁର । କର୍ପୂରରୁ ଅତି ଶୀତକର ।
କରୁଣା କପଟ କର୍କଶ କୁଟ ତାଙ୍କ ହୃଦୟଙ୍କୁ ନମସ୍କାର ହେ । ଉଦ୍ଧବ । ୧୬ ।
କୁଜ କରରେ ଖଞ୍ଜିଲା ଧନୁ । କର୍ମ ଚୂର୍ମିଲା କ ଆମ୍ଭ ତନୁ ।
କୁଟିଳ ବଚନ ପ୍ରାୟେ ସେ ମୋହନ ଏତେବେଳେ ଯାଉନାହିଁ ମନୁ ହେ । ଉଦ୍ଧବ ।୧୭।
କି କରନ୍ତି ବଡ଼ ପ୍ରଭୁମାନେ । କିଛି ବିଚାରନ୍ତି ନାହିଁ ମନେ ।
କଲେ ଅବେଖିରେ କ ବୋଲିବେ ନର ନୀତିବନ୍ତ ବିଚକ୍ଷଣମାନେ ହେ । ଉଦ୍ଧବ ।୧୮।
କଏବାର କଲା ପ୍ରାୟେ ବନ୍ଦୀ । କେତେ କହି ପାରନ୍ତି ସେ ଛନ୍ଦି ।
କଉଁ ନାରୀ ଦେହ ନୋହିବ ଅଦେହ ମୋହ ଅମୋହ ପାଶରେ ବନ୍ଦୀ ହେ । ଉଦ୍ଧବ ।୧୯।
କାନନରୁ କୀର ଧରି ଆଣି । କହି ଅନେକ ଯତନେ ବାଣୀ ।
କି କି ହୋଇଗଲେ ନ ଆସଇ ଭଲେ ସେହି ପ୍ରକାରେ ମୁରଲୀପାଣି ହେ । ଉଦ୍ଧବ ।୨୦।
କାହିଁ କୋକିଳଙ୍କୁ ପ୍ରତିପାଳି । କାର୍ଯ୍ୟ ପାଇଁଛି କି କହି ଖେଳି ।
କୁହୁମଙ୍କୁ ଅଳି ଜଳି ପ୍ରାୟେ କେଳି ଗୋପବାଳୀଙ୍କି ଶ୍ରୀ ବନମାଳୀ ହେ । ଉଦ୍ଧବ ।୨୧।
କହିବାକୁ ଅଉ କିଛି ନାହିଁ । କୁଜପିଠି ଅଛି ସବୁ କହି ।
କୁକର୍ମ କରିବା କେତେ ତାଙ୍କୁ ଅବା କହିବାକୁ ତହୁଁ ଆନ ନାହିଁ ହେ । ଉଦ୍ଧବ ।୨୨।

କାଳଧଉତ କୁଟିଳ ହେଲେ । କଉଁଠାରେ ନ ବକାଇ ଭଲେ ।
କ କହିବୁ ଆମ୍ଭେ କ ନ ଜାଣ ତୁମ୍ଭେ ସବୁ ସୁନ୍ଦର ପ୍ରଭୃତ୍ୱ ଥିଲେ ହେ । ଉଦ୍ଧବ ।୨୩।
କୃତ୍ତିବାସ ହେଲେ ଦିଗବାସ । କେହ୍ନେ କରନ୍ତି କ ଉପହାସ ।
କମଳନୟନ କୁଣ୍ଡଳୀ ଶୟନ କଲେ ସମସ୍ତେ ତାହାଙ୍କ ଦାସ ହେ । ଉଦ୍ଧବ ।୨୪।
କଉଁ ଯାନ ନ ମିଳେ ଶିବଙ୍କୁ । କଉଁ ଭୂଷଣ ଦୁର୍ଲ୍ଲଭ ତାଙ୍କୁ ।
କଣ୍ଠେ ଅସ୍ଥିମାଳ ପକାଇ ସେ ଖେଳ ହୋଇ ଆରୋହନ୍ତି ବୃଷଭକୁ ହେ । ଉଦ୍ଧବ ।୨୫।
କହିବ ଅବା ତୁମ୍ଭେ ଆଶିଷ । କଲେ ସେ ତୁମ୍ଭଙ୍କୁ ଏଡ଼େ କଷ ।
କାଖେ କୋଳେ ଧର ନାନା ସେବା କର ତାହାଙ୍କର ଆମ୍ଭେ ପରସ୍ପରଶ ହେ । ଉଦ୍ଧବ ।।
କଥା ପ୍ରସଙ୍ଗେ କହିଲୁ ଏହା । କରନ୍ତୁ ସେ ଯାହା ଇଚ୍ଛା ତାହା ।
କୁମ୍ଭକାର ଉହା ପ୍ରାୟେ ଅନ୍ତର୍ଦାହା କଲେ କୁବୁଜାଙ୍କ କାମଦୁହା ହେ । ଉଦ୍ଧବ ।୨୭।
କୁଳଶୀଳ ଲଜ ଭୟ ଛାଡ଼ି । କଇତବ ପୀରତିରେ ଜଡ଼ି ।
କୃପଣକୁ ଲେଖି ପ୍ରାୟେ ତାଙ୍କୁ ଲଭି ଆଶା-ଅନଳେ ମରୁଛୁ ପୋଡ଼ି ହେ । ଉଦ୍ଧବ ।୨୮।
କପିଳ କୋପେ ସଗର ପୋୟେ । କରିଥିଲେ ଯେଉଁ ରୂପେ କାୟେ ।
କାଳେ ସେହିରୂପେ ହେଲୁଁ କାମ କୋପେ ତୁମ୍ଭେ ହୁଅ ଭଗୀରଥ ପ୍ରାୟେ ହେ । ଉଦ୍ଧବ ।।
କୃଷ୍ଣ-ଗଙ୍ଗା ଆଣି ବେଗେ ଦିଅ । କୀର୍ତ୍ତି ସମସ୍ତ ଲୋକରେ ପାଅ ।
କରୁଛୁ ବିନତି ଗୋକୁଳ ଯୁବତୀ ଆମ୍ଭମାନଙ୍କୁ ପ୍ରସନ୍ନ ହୁଅ ହେ । ଉଦ୍ଧବ ।୩୦।
କରେ ବନ୍ଧି ଯାହାକୁ ବିବେକ । କହିବାର ତାହାକୁ ଅଧିକ ।
କ ନ ଜାଣ ତୁମ୍ଭେ କ କହିବୁଁ ଆମ୍ଭେ ପର ଉପକାରୀ ବଡ଼ଲୋକ ହେ । ଉଦ୍ଧବ ।୩୧।
କୃଷ୍ଣେ ଅଛି ତୁମ୍ଭର ଭକତି । କଉଁ ପ୍ରକାରେ ନ ଜାଣ ନୀତି ?
କଲେ ଧର୍ମ କର୍ମ ଲଭି ସ୍ୱର୍ଗାଶ୍ରମ ଶ୍ରୁତି କହିଅଛି ଏହିମତି ହେ । ଉଦ୍ଧବ ।୩୨।
କହିବାକୁ ଏତେକ ତୁମ୍ଭଙ୍କୁ । କୃପା କରିବ ବାରେ ଆମ୍ଭଙ୍କୁ ।
କୃଷ୍ଣ ସତ୍ୟବାଦୀ ହେଲେ ସତ୍ୟବାଦୀ ହୋଇ ନାଶିଲେ ଆମ୍ଭ ଦମ୍ଭକୁ ହେ । ଉଦ୍ଧବ ।୩୩।
କୃଷ୍ଣଦାସ ଏହି ଘେନ କର । କୃଷ୍ଣ ପାଇଁ ମରୁଅଛି ଝୁରି ।
କେତେବେଳେ ଆଣ କରାଇ ଜବାଣ ନ କରିବ ଧର୍ମକୁ ବାହାର ହେ । ସୁଜନେ । ୩୪ ।

□□□

ଭୂପତି ପଣ୍ଡିତ

# ଶ୍ରୀକୃଷ୍ଣଙ୍କ ଚରଣଚିହ୍ନ ଦର୍ଶନେ

## ( ପ୍ରେମ-ପଞ୍ଚାମୃତ : ଦ୍ୱିତୀୟ ଅଧ୍ୟାୟ )

ଜ୍ଞାନ ବୋଲନ୍ତି ମନ ଶୁଣ । ରାଜାଙ୍କୁ କହେ ତପୋଧନ ॥
ସୁଚତୁରେ ଶୁଣ ମହାଭୂପ । ଶ୍ରୀ ଗୋପୀ ଗୋବିନ୍ଦ ସ୍ୱରୂପ ॥
ପରମ ଆତ୍ମା ଭଗବାନ । ରାଧିକା ଜୀବଆତ୍ମା ଜାଣ ॥
ରାଧିକା ଅଂଶେ ଯେତେ ଗୋପୀ । ସେ କୃଷ୍ଣ ଜୀବନ ସ୍ୱରୂପୀ ॥
ପରମେ ମିଶିପାରେ ଜୀବ । ଆନକୁ ଅଟେ ଅସମ୍ଭବ ॥
ଜୀବ ପରମ ଏକ ଜାଣ । ଭୋଗ ସଂଯୋଗ ଭିନ୍ନ ଭିନ୍ନ ॥
ଯେସନେ ବୀଜ ବେନିଫାଳ । ଏକ ସେ ନୁହଇ ଯୁଗଳ ॥
ଦ୍ୱି ଅର୍ଦ୍ଧେ ଏକ ପୂର୍ଣ୍ଣ ହୋଇ । ଏଣୁ ସେ ଏକ ଅଙ୍ଗ ଦୁଇ ॥
ସେ ଭଜେ ଗୋପୀ ଅଙ୍ଗେ ମିଶି । ସେ ପାରେ କୃଷ୍ଣ ଅଙ୍ଗେ ପଶି ॥
ବେଦ ଯେ ବ୍ରହ୍ମକୁ ପ୍ରକାଶି । ବ୍ରହ୍ମ ରହିଛି ବେଦେ ମିଶି ॥
ବେଦର ଆତ୍ମା ଭଗବାନ । ବେଦ ତା ଶରୀର ପ୍ରମାଣ ॥
ଦେହରେ ଯେହ୍ନେ ଆତ୍ମା ଥାଇ । ଦେହ ତାହାରେ ନ ମିଶଇ ॥
ଏରୂପେ ବେଦେ ବ୍ରହ୍ମ ପୂରି । ବେଦ ନ ଜାଣେ ନିର୍ଣ୍ଣେକରି ॥
ସମ୍ପୂର୍ଣ୍ଣ ବେଦମନ୍ତ୍ର ବ୍ରହ୍ମ । ବେଦ ନ ଜାଣେ ତାର ମର୍ମ ॥
ଏରୂପେ ବ୍ରହ୍ମ ବେଦାନ୍ତର । ଦେହରେ ଆତ୍ମା ଯେ ପ୍ରକାର ॥
ଯେ ବେଦ-ଅଂଶୀ କନ୍ୟାଗଣ । କୃଷ୍ଣର ଦେହ ବୋଲି ଜାଣ ॥
ଏ ନିତ୍ୟରୂପୀ କରି ଚିହ୍ନି । ବେଦାନ୍ତ-ମତ-ତତ୍ତ୍ୱ-ଜ୍ଞାନୀ ॥
କୃଷ୍ଣର ଦେହେ ମିଶିଥାନ୍ତି । ଆତ୍ମାରେ ପଶି ନ ପାରନ୍ତି ॥
ଯେ ଦେବଅଂଶୀ କନ୍ୟାଗଣ । କୃଷ୍ଣର ବନିତା ବିଧାନ ॥
ନିଜ ଭାରିଯା ପାଟବଂଶୀ । ଜାନୁରେ ଥାନ୍ତି କୋଳେ ବସି ॥
ହୃଦେ ଜଡ଼ିତ ରତିସ୍ନେହେ । କେବଳ ଭିନ୍ନ ଭିନ୍ନ ଦେହେ ॥
ଅଙ୍ଗେ ସେ ଅଙ୍ଗ ନୋହେ ଲୀନ । ଏଣୁ ଏ ବନିତା ବିଧାନ ॥
ଯେ କନ୍ୟାଗଣ ମୁନିଅଂଶୀ । କୃଷ୍ଣର ଦେହଲଗା ଦାସୀ ॥
ନିଜ ଭାରିଯା ସମ୍ବରି । ତାହାଙ୍କ ତୁଲେ ପ୍ରୀତି କରି ॥

କୃଷ୍ଣ କରନ୍ତି ସ୍ନେହ ଅତି । ସେ ଦାସୀ ଭାବ ନ ଛାଡ଼ନ୍ତି ॥
କୃଷ୍ଣ ଆସନେ କୃଷ୍ଣ ଶେଯେ । ଭରସି ନ ପାରନ୍ତି ଏ ଯେ ॥
ଜଣାନ୍ତି ଶିରେ କର ଦେଇ । ଝଣ୍ଟେ ଦୂରରେ ଉଭା ହୋଇ ॥
ଆଘ୍ରାଣ ପୁଷ୍ପ ନ ଧରନ୍ତି । ମୁକତ ମୁଖେ ନ ହସନ୍ତି ॥
ମିଳନ୍ତି ଶୟନ ଭବନେ । ବସନ୍ତି ଚରଣସେବନେ ॥
କୃଷ୍ଣ ତାହାଙ୍କୁ ବଳେ ନେଇ । ପଲ୍ୟଙ୍କେ ସଙ୍ଗତେ ଶୁଆଇ ॥
କରନ୍ତି ଯେ ଅଧରୁ ପାନ । ଯେ ଲୀଳା ଶୃଙ୍ଗାରବିଧାନ ॥
ଏ ରୂପେ ଗୁଣି କନ୍ୟାଙ୍କର । ଶ୍ରୀକୃଷ୍ଣ ଜୀବନଠାକୁର ॥
କେବଳ କୃଷ୍ଣ ଆତ୍ମା ଗୋପୀ । ବେଦକନ୍ୟାଏ ଦେହରୂପୀ ॥
ଦେବକୁମାରୀ ପାଞ୍ଚବଂଶୀ । ନିଜ ସେବକା ମୁନିବଂଶୀ ॥
କୃଷ୍ଣର ସୁରସିକପଣେ । ସର୍ବେ ସୋହାଗୀ ମନେ ମନେ ॥
ଏହାଙ୍କ ଭାବ ଜାଣିବାରେ । କୃଷ୍ଣ ବିଚାରିଲେ ମନରେ ॥
କରୁଣା ରସ ଆସ୍ୱାଦନ । କରିବା ହୋଇ ଅନ୍ତର୍ଦ୍ଧାନ ॥
ଅଦୃଶ୍ୟ ହୋଇଲେ ଶ୍ରୀହରି । ଏକ ଗୋପୀଙ୍କ ସଙ୍ଗ କରି ॥
ସକଳେ କେହି ନ ଜାଣିଲେ । କୃଷ୍ଣର ନିଜ ମାୟାବଳେ ॥
କାଳିନ୍ଦୀ କାଳିଆ ତମାଳ । ଚନ୍ଦ୍ର ଆଚ୍ଛାଦି ମେଘମାଳ ॥
କୁଞ୍ଚିତ କଳା କେଶଭାର । ରାଧାର ଅଙ୍ଗେ ନୀଳାମ୍ବର ॥
କସ୍ତୁରୀ ଚିତା ପୟୋଧରେ । ଅଞ୍ଜନ ପଙ୍କଜ ନେତ୍ରରେ ॥
କୁସୁମେ ଆଚ୍ଛାଦି ଭ୍ରମର । ବୃକ୍ଷଙ୍କ ଛାୟା ଅବନୀର ॥
ଭୟାକୁ ସ୍ୱଭାବ ଯୁବତୀ । ଘନ ଅନ୍ଧାର ବନସ୍ଥିତି ॥
ଦଣ୍ଡେକ ପରିହାସ ବୋଲି । ମଣିଲେ ସକଳ ଗୁଆଲୀ ॥
ପୁଣି ହିଁ ଘଡ଼ିକ ଅନ୍ତରେ । ଖୋଜିଲେ ଗୋପୀଙ୍କ ମଧ୍ୟରେ ॥
ରାଧିକା ସର୍ବ ଗୋପୀଗଣେ । ଆପେ ଶୋଧିଲେ ଜଣେ ଜଣେ ॥
ଦେଖିଲେ ବୃନ୍ଦାବତୀ ନାହିଁ । ସତେହେଁ ନେଲା ଗୋ କହ୍ନାଇ ॥
ଜାଣିଲେ ନଷ୍ଟେ ଗଲା ଛାଡ଼ି । ପର୍ବତ ପଡ଼ିଲା କି ମାଡ଼ି ॥
ଡରେ କମ୍ପନ୍ତି ଥରହର । ତୁଣ୍ଡରୁ ନ ଫୁଟେ ଉତ୍ତର ॥
ରୂପ ଯୌବନ ଗୁଣ ସର୍ବ । ଭାଜିଲା ସୁହାଗିନୀ ଗର୍ବ ॥
ଏକ ଆରକେ ମୁଖ ଚାହିଁ । ଚିବୁକେ ଅଙ୍ଗୁଳି ଲଗାଇ ॥
ଚିତ୍ରପିତୁଳାର ସଦୃଶ । ନୟନ କଲେ ଅନିମିଷ ॥
ବେଶ ବୟସ ଅଳଙ୍କାର । ମଣିଲେ ତପତ ଅଙ୍ଗାର ॥
ସୁଖଦ ଦ୍ରବ୍ୟ ଯେତେ ଥିଲା । ଦୁଃସହ ଦୁଃଖଦ ହୋଇଲା ॥
ସର୍ବସମ୍ମତ ବାକ୍ୟ ଠିକ । ବୋଇଲେ ଯୁବାଜନ୍ମ ଧିକ ॥

ଯେବେ ଗୋ ହୋଇଥାନ୍ତୁ ବୃଦ୍ଧା । କେ ତାଙ୍କୁ କରନ୍ତା ଶରଧା ॥
ସେ ବା ଅମ୍ଭଙ୍କ କାହିଁପାଇଁ । ଡାକନ୍ତା ବେଣୁସ୍ୱନ ଦେଇ ॥
ବୃଦ୍ଧା ଗୋପୀଏ ଗୋପପୁରେ । ସୁଖେ ଗୋ ଶୋଇଥିବେ ଘରେ ॥
ଏ ତାଙ୍କୁ କେଉଁ ପ୍ରୟୋଜନେ । ରାତ୍ରେ ଡାକବ ଘୋରବନେ ॥
ଆମ୍ଭେ ବନ୍ଧୁଛୁଁ ଯଉବନ । କେ ଆନ ହେବ ସ୍ଥାନମାନ ॥
ଆମ୍ଭ ବୟସ ଆମ୍ଭ ରୂପ । କନକ-ଚମ୍ପା ପ୍ରାୟ ବପୁ ॥
ଏ ଉଚ୍ଚ ଉରଜ ପ୍ରକଟ । ଏଥକୁ ସିନା ତାର ହଠ ॥
ସୁରଙ୍ଗ ଅଧର ଆମ୍ଭର । ବାବୁ ଅର୍ଜିଲା ଧନ ତାର ॥
ଦୁର୍ବଳ ମଧ୍ୟ ଅତି କ୍ଷୀଣ । ଏହାର ଦୋଷ ଗୋ ନ ଘେନ ॥
ଡରଇ କୃଷ୍ଣ ଭେଟିବାରେ । ତେଣୁ ଲୁଚଇ ଏ ଅମ୍ବରେ ॥
ବଇର ବପୁଳ ନିତମ୍ବ । ପଛକୁ ଉଦ୍ଧତ ଆରମ୍ଭ ॥
ଏଣୁ ଏ ପଛକୁହା ଲୋକ । ଖଚୁଆ ଅତି ଅବିବେକ ॥
ରୂପରେ ଯେ ଅମୃତ ଥିଲା । ବ୍ୟକତ ଏହୁ ସିନା କଲା ॥
ଭୋଗ ସଂଯୋଗ ବେଳ କାଳ । ସବୁ କହିଲେ ଏ ଯୁଗଳ ॥
ପଛେ ବଢ଼ିଲେ ଏହୁ କାର୍ଯ୍ୟେ । ସମ୍ମୁଖେ ହେବେ କେଉଁ ଲାଜେ ॥
ଧର୍ମ୍ମ ମୋ ଯେବେ ସତ ହେବ । ଏଡ଼ି ପାଇବେ ପରାଭବ ॥
କନକ ରମ୍ଭା ବିପରୀତ । ସୁନ୍ଦର ଜାଣ ସୁବଳିତ ॥
ବନ୍ଧୁବା ଶ୍ରମଟି ଆମ୍ଭର । ଏ ଦୁହେଁ ସର୍ବାଙ୍ଗ ତାହାର ॥
ବଳନ ବାହୁ ସୁବଳିତ । କର କୋକନଦ ନିନ୍ଦିତ ॥
ଏ ଯେ ଆମ୍ଭର ବେନିଭୁଜ । ଏହାଙ୍କ ମୁଖେ ନାହିଁ ଲାଜ ॥
ତାହାଙ୍କୁ ଆଲିଙ୍ଗନ କରି । ଭିଡ଼ନ୍ତି ହୃଦ ମଧ୍ୟେ ଧରି ॥
ଅତି ଆପତ ଏ ତାହାର । ସର୍ବସ୍ୱ ନାଶିଲା ଆମ୍ଭର ॥
ଏବେ କି ହେବ ତାହା ଚିନ୍ତ । ଭୋଜନ ଅନ୍ତେ ପୁଚ୍ଛି ଜାତି ॥
କନକ ଆମ୍ଭ ବେନିଫାଳ । ନିନ୍ଦିତ ସୁନ୍ଦର ସୁଡ଼ୋଳ ॥
ଏ ଯେ ଆମ୍ଭର କର୍ଣ୍ଣ ବେନି । ଆମ୍ଭେ ବୁଡ଼ିଲୁ ଏହା ଘେନି ॥
ବେଦବଚନ ଧର୍ମବାକ୍ୟ । ମଣିଲୁଁ ଗାଳିରୁ ଅଧିକ ॥
ଗୁରୁ ଉପଦେଶ ବଚନ । ଜାଣି ବାଜିଲା ବଜ୍ରବାଣ ॥
ପାଇ ମୁରଲୀ ସୁଧାରସ । ସର୍ବ ବିଷୟ କଲୁଁ ବିଷ ॥
ସଂସାର ବାକ୍ୟେ ଏ ବଧିର । ମୁରଲୀ ଶବଦ ଅଧୀର ॥
ଏ ବେନି ଶ୍ରବଣ ପ୍ରସାଦେ । ପଡ଼ିଲୁ ଏ ଘୋର ପ୍ରମାଦେ ॥
ଏ ଯେ ଆମ୍ଭର ବେନି ଡୋଳ । ଖଞ୍ଜନଗଞ୍ଜନ ଚଞ୍ଚଳ ॥
ତା-ସଙ୍ଗେ ପ୍ରୀତିହେବୁ ମୂଳ । ଏହାଙ୍କ ଅର୍ଜିଲା ଏ ଫଳ ॥

| | | | |
|---|---|---|---|
| ଗୃହିଁଲା ମାତ୍ରକେ ମିଶିଲେ | । | ମନ ମାଣିକ୍ୟ ଭେଟ ହେଲେ | ॥ |
| ରଘୁରତନ ଦେବ କରି | । | ଅଇଲେ ସବୁ ଜଆ ପାଶ | ॥ |
| ଗୁହାରି କରବୁଁ କାହାକୁ | । | ଏ ସିନା ଭଣ୍ଡିଲେ ଆମ୍ଭଙ୍କୁ | ॥ |
| ସୁରଥ ରତ୍ନ ଦେଲେ ନେଇ | । | ଭେଣ୍ଡି ଚ୍ଛନ୍ନେହ ସୁନା ପାଇ | ॥ |
| ସେ ଏବେ ହୋଇଲା ପିତଳ | । | ଆମ୍ଭର ପରଶ ଅମୂଲ୍ୟ | ॥ |
| ଏତେ ପଦାର୍ଥ ଏତେ ମିଛେ | । | କମା ପକାଇଲେ ପ୍ରତ୍ୟକ୍ଷେ | ॥ |
| ଏହାଙ୍କ ରୂଲେ ନ୍ୟାସ୍ଥ କରି | । | ସବାକୁ ଯେନ ସ୍ଥିରୁ ଧରି | ॥ |
| ନୋହିଲେ କୃଷ୍ଣଙ୍କୁ ଭେଟାଉ | । | ଅଧିକେ ନଷ୍ଟ କାହିଁ ଆଉ | ॥ |
| ଯେବେ ନ ପାରିବୁ ଭେଟାଇ | । | ମନକୁ ଆଣ ଲେଉଟାଇ | ॥ |
| ମନ ଯେ ତୋହର ସଙ୍ଗତେ | । | ପଡ଼ିଲା ଗୋବନ୍ଦ ଆସ୍ୱଦ୍ଧେ | ॥ |
| ଯେ ଯେତେ ଲୋକ ସଙ୍ଗେ ଥାଇ | । | ତା ଦୋଷ ଗୁଣ ସେ ଲଭଇ | ॥ |

× × ×

□□□

ଉପେନ୍ଦ୍ର ଭଞ୍ଜ

# ଦଶରଥଙ୍କ ପ୍ରସ୍ତାବ

## ( ବୈଦେହୀଶବିଳାସ : ସପ୍ତଦଶ ଛାନ୍ଦ )

( ରାଗ—ଧନାଶ୍ରୀ )

ବସି ବଶିଷ୍ଠ ଜାବାଳ ବାମଦେବ କାଶ୍ୟପ ସୁମନ୍ତ୍ର ଯେନ ।
ବୋଲେ ଦଶରଥ ମୋର ମନୋରଥ ମଣ୍ଡାଇବ ରାଜଧାନୀ ।
ବୀରବୃନ୍ଦରେ ଇନ୍ଦ୍ର, ବସୁ ନୃପପଦେ ରାମଚନ୍ଦ୍ର ।୧।

ବ୍ରହ୍ମା ସର୍ଜନାରେ ବ୍ରହ୍ମାଣ୍ଡେ କାହିଁଛୁ ଆଉ ମୋ ତନୟ ସରି ।
ବାମେ ବାମଦେବ ଧନୁକୁ ଭାଙ୍ଗିଲା ବାମେ ଭୃଗୁପତି ହାରି ।
ବସୁପତି ସମସ୍ତ, ବସି ସେବବେ ସେବକମତ ।୨।

ବୋଇଲେ ସୁମନ୍ତ୍ର ସେ ପୁଣି ଏମନ୍ତ ଶୁଣିବେଟି ପିତୃଋଣ ।
ବଧକାରକ ଅନରଣ୍ୟ ରାଜାର ବଧରେ ହେବେ ନିପୁଣ ।
ବେଧାବଧାନ ପୁଣି, ବୈବସ୍ୱତବଂଶୀ ତୋଷ ଶୁଣି ।୩।

ବୁଝିଲେ ଲଗ୍ନ ମଗ୍ନ ହୋଇ ସୁଝିଲେ ମଙ୍ଗଳ ଦାନରେ ତହିଁ
ବୃହସ୍ପତି ରାଶି ଅଷ୍ଟମେ ବଳସୀ ନୃପତି ହୋଇବେ କେହି ।
ବାମଦେବ ଉତ୍ତର, ବକ୍ତା ବଶିଷ୍ଠ ହେବେ ଈଶ୍ୱର ।୪।

ବପେ କି ପୁଚ୍ଛୁ ଶୁଭ ଧର୍ମେ କହିଲେ ହେବେ ଦ୍ରବ୍ୟଭୂତଭୋଗୀ ।
ବଇଶ୍ରବଣକୁ ଜିଣିବେ ଧୂର୍ତ୍ତକ ମନ୍ତ୍ରନେ ହୋଇ ସରାଗୀ ।
ବୋଲୁଅଛୁଁ ଏମନ୍ତ, ବୋଧ ନରଦେବଦେବ ଚିତ୍ତ ।୫।

ବାଞ୍ଛା ପାଇ ମାତାମାନେ ହରଷିତା ସୀତା ତୋଷ ନୁହେ କହ ।
ବିଧୁ ଦର୍ଶନେ ଯଥା ସିନ୍ଧୁ କଲ୍ଲୋଳ ଅଧିକରେ ଲୋଳ ବହ ।
ବେଶ ଅଭିଷେକର, ବେଳେ ଦେଖି ହେବା ସେ ପ୍ରକାର ।୬।

ବଗୁରନ୍ତ ତହିଁ ରାଉତ ମାହୁନ୍ତ ରଥୀ ପଦାତିଏ ମିଶି ।
ବସିଲେ ରାମ ସିଂହାସନେ ଦ୍ୱିଗୁଣେ ଆମ୍ଭ ଗୁଣେ ଯିବେ ଦଶି ।
ବିବେକ ଏ ପ୍ରକାର, ବଡ଼ ସୁଖ ଜନ୍ମୁଛି ଆମ୍ଭର ।୭।

ବନ୍ଦୀ କେରଳ ଇତ୍ୟାଦି ଭିଷ୍ଟ ମେଳ ରାବ ମାଗି ନ ଜାଣିବା ।
ବ୍ରାହ୍ମଣକୁଳର ଆକୁଳ ତୁଟିଲା ଇଷିତେ ଯାଜ୍ଞିକ ହେବା ।
ବିନା ପୂଜା ଦେବତା, ବିଗ୍ରହଲେ ହୋଇବା ପୂଜିତା ।୮।

ବଳିବେ ପାଞ୍ଚିଲେ ସୁଲଭେ ଧେନୁ ଯେ ହେବେ ଆମ୍ଭ କ୍ଷୀରବତୀ ।
ବାଦବାଦ ଦେବେ ଆମ୍ଭ ବାଦୀ ଏବେ ନାଶ ନୋହିଲା ଏ ମତି ।
ବ୍ରହ୍ମା ସମୀପେ ଗଲେ, ବିଭ୍ରମ ସେ କୈକେୟୀଙ୍କି କଲେ ।୯।

ବିପଣୀରେ ଶୁଣି ରାମ ରାଜାବାଣୀ ବାହୁଡ଼େ ମନ୍ଥରା ତ୍ୱରା ।
ବାରି ଭରିଅଛି ନୟନଯୁଗଳେ ଗଲେ ପ୍ରାଣ ଥିଲା ପରା ।
ବୃକ୍ଷ କାଟିଲା ପ୍ରାୟେ, ବିପତିତ ତା ଅଗ୍ରତେ ହୁଏ ।୧୦।

ବୋଲେ ଟେକି ଏ କି ଭରତ-ଜନନୀ କହୁଅଛୁ ତହୁଁ ଜବ ।
ବଡ଼ ସୁଭାଗୀ ବୋଲାଉ ରେ ଶୋଭାଙ୍ଗୀ ଭାଙ୍ଗିଗଲା ତୋ ଗରବ ।
ବେର କି ହୁଏ ତୋର, ବିଷ ପ୍ରାୟେ ଧାରେ ମୋ ଶରୀର ।୧୧।

ବିବେକୀ ଧାର୍ମିକ ଶୋଭାପ୍ରଶଂସାରେ ସଂସାରେ ଜଣେ ନ ଗଣ ।
ବାହୁଟି ଯାହାର ବଜ୍ରରୁ ଅଧିକ କି ବର୍ଣ୍ଣିବା ତାର ବାଣ ।
ବନ୍ଦିତ ସେ ନନ୍ଦନ, ବୋଲିବୁ ବା ବୟସରେ ସାନ ।୧୨।

ବଳିଷ୍ଠ ଦାନବେ ପୂର୍ବଦେବ କହି ଅନୁଜ ଦେବତା ଇନ୍ଦ୍ର ।
ବୋଲାଇ ସପତ୍ନୀ ଯେ ଯାହାର ପ୍ରୀତି କେହି ହୋଇନାହିଁ ସାନ୍ଦ୍ର ।
ବିସା କରି ନୃପତି, ବୁଝି ଥିଲେ ବୋଧ କ୍ଷିତିପତି ।୧୩।

ବହ୍ନଲାଭ ମଣ୍ଠ କଉବେ ଅହଲ୍ୟା ଦୂଷଣ ଲଭିଲା ପର ।
ବନ୍ଧନ ମାଡ଼ି ଶବ୍ଦନ ସଦନରେ ନୟନରେ ପୂର ବାର ।
ବନେ ନୃପ ଏ କାଲେ । ବନ୍ଧୁ ବନ୍ଧୁ ବୋଲିଣ ଡାକିଲେ ।୧୪।
ବଷବୈଦ୍ୟ ପଦ ନ ମାନିଲା ପ୍ରାୟେ ସ୍ୱଭାବେ ଯୋଗିନୀ ସେହୁ ।
ବହ୍ନି ଯେଉଁନେହରେ ପତଙ୍ଗ ପ୍ରକାରେ ପାଶେ ପରବେଶ ତହୁଁ ।
ବୋଧେ ଚଭୁକ ଧର, ବନାଦୋଷେ ପ୍ରଜ୍ୟୈନ ଗୋଉ ।୧୫।

□□□

ଲୋକନାଥ ବିଦ୍ୟାଧର

# ନାରଦ ମହର୍ଷିଙ୍କ ସମ୍ବାଦ

( ସର୍ବାଙ୍ଗସୁନ୍ଦରୀ : ଚତୁର୍ଥ ଛାନ୍ଦ )

( ରାଗ—କେଦାର )

ଏକ ଦିନେ ନାରଦ ମହାଋଷି । ସେହୁ ନଗ୍ରେ ପ୍ରବେଶ ହେଲେ ଆସି ।୧।
ତାଙ୍କୁ ଦେଖିଣ ପୁଷ୍ପଧନୁ ରାଜା । ଗୁରୁ ଗୋବିନ୍ଦ ପାଦେ କଲେ ପୂଜା ।୨।
ଗଙ୍ଗା ସଲିଳେ ଚରଣ ଧୋଇଲା । ପାଦଉଦକ ଗର୍ଭକୁ କ୍ଷେପିଲା ।୩।
ରତ୍ନପଲଙ୍କେ ବସାଇ ତୁରତେ । ବେନି କର ଯୋଡ଼ି ଉଭା ପୁରତେ ।୪।
ତାର ଦୁହିତାକୁ ଘେନ ଭୂପାଳ । ଆସି ପ୍ରଣାମ କଲା ପାଦତଳ ।୫।
ମୁନି-ମୁକୁଟମଣି ଏ କନ୍ୟାକୁ । କହ ପ୍ରଦାନ କରିବ କାହାକୁ ।୬।
ଶୁଣି ବୋଲନ୍ତି ଶୁଣ ନୃପବର । ଏହୁ ଦିନୁ ହୁଅଛି ତତପର ।୭।
ଏହୁ ଆଗତ ମାଧବ ମାସରେ । ଶୁକ୍ଳପକ୍ଷ ପଞ୍ଚମୀ ଗୁରୁବାରେ ।୮।
ସ୍ୱୟମ୍ବର କରିବ ତୋ ଆତ୍ମଜା । ଶୁଣି ଆସିବେ ଧନପୁର ରାଜା ।୯।
ମୁଁ ତ ଯାଉଛୁ ଆଜହୁଁ ମର୍ତ୍ତ୍ୟରୁ । ସ୍ୱର୍ଗଲୋକେ ଜାଣିମେ ମୋହଠାରୁ ।୧୦।
ଏହା ଶୁଣି ସେ ପୁଷ୍ପଧନୁ ରାଜା । ଶିରକମଳେ ପାଦ କଲା ପୂଜା ।୧୧।
କସ କହିବ ତ୍ରିମୁରେ ତୁମ୍ଭର । ତୁମ୍ଭେ ଅନ୍ତରଯାମୀ ଯୋଗେଶ୍ୱର ।୧୨।
ଏତେ ଶୁଣି ସେ ମୁନୀନ୍ଦ୍ର ମୁକୁଟ । ତାକୁ ଗ୍ରୀହୁଁ ଦେଖିଲେ ଚତ୍ରପଟ ।୧୩।
ଲେଖାହୋଇଛୁ ଦର୍ଶନେ ନୟନେ । ବକ୍ଷୁ ସଙ୍ଗେ ରଖିଲେ ସ୍ଥିରମନେ ।୧୪।

ପର ଦେଖାଇବାକୁ ପଟ ଲେଖି । ନେଲେ ଅଞ୍ଜନ-ତୂଳାଗ୍ରଣି ଶିଖୀ ।୧୫।
ଇନ୍ଦ୍ର ସଦନେ ହୋଇଲେ ପ୍ରବେଶ । ଦେଖି ପ୍ରଣାମ କଲେ ଅମରେଶ ।୧୬।
ଦିବ୍ୟ ଆସନ ଉପରେ ବସାଇ । ତାଙ୍କୁ କହନ୍ତି ହୋଇଣ ବିନୟୀ ।୧୭।
କାହିଁ ଥିଲ କସ କହ ବାରତା । ଭୂତ ଭବିଷ୍ୟ ବର୍ତ୍ତମାନଜ୍ଞାତା ।୧୮।
ଘେନି ଅମର ଅଧିପ ଦଇନି । ପଟ ପ୍ରକାଶ କଲେ ମହାମୁନି ।୧୯।
ପଟେ ଦେଖି ସେ ସୁନ୍ଦରୀ ରୂପକୁ । ସ୍ତୁତି କଲେ ସହସ୍ରାକ୍ଷ ଧାତାଙ୍କୁ ।୨୦।
କ୍ଷଣେ ପର୍ଯ୍ୟନ୍ତେ ହୋଇଣ ସ୍ତକିତ । ବୋଲେ ଧନି ଏ କାହାର ଯୋଷିତ ।୨୧।
ରମା ରତି ଶଚୀ ରମ୍ଭା ଗଉରୀ । କେହି ଏହା ରୂପକୁ ନୋହେ ସରି ।୨୨।
ଏ କେ କହ କଳହପ୍ରିୟ ମୁନି । ଏ କି ବିଷ୍ଣୁ ସଦାଶିବ ମୋହିନୀ ।୨୩।
ପୁଣି ବୋଇଲେ ଏ କାହା ଦୁହିତା । ଏହା ଜନମ ଜାଣି ହୈମବତୀ ।୨୪।
ଜନ୍ମତୁକେ ପତି ମନ ମୋହିଲେ । ସତ୍ୟ କରାଇ ଅର୍ଦ୍ଧ ଅଙ୍ଗ ହେଲେ ।୨୫।
ଆଉ କାହାକୁ ଅବା ଦେବା ଲକ୍ଷି । ଏହା ସମ ଦେଖିନାହିଁ ମୋ ଆଖି ।୨୬।
ତାର ମନ ଜାଣି କହନ୍ତି ମୁନି । ଏ ଯେ ରାଣୀ ରସବତୀ ନନ୍ଦିନୀ ।୨୭।
ପିତା ନାମ ପୁଷ୍ପଧନୁ ରାଜନ । ମୁଁ ଯେ ଜାଣେଁ ଏହା ବର୍ଣ୍ଣଦନ ।୨୮।
ଏହି ଆଗତ ମାଧବ ମାସରେ । ଶୀତପକ୍ଷ ପଞ୍ଚମୀ ଗୁରୁବାରେ ।୨୯।
ତିନି ଭୁବନ ସକଳ ନରେଶ । ତାର ପୁରରେ ହୋଇବେ ପରବେଶ ।୩୦।
ଇନ୍ଦୀବର ବଶବ ରମାବର । ଏତେ କହି ଚଳିଲେ ମୁନିବର ।୩୧।
ଚିତ୍ରପଟକୁ ଘେନି ନିଜ କର । ଇନ୍ଦ୍ର ପାଇଲେ ବିରହ ବିକାର ।୩୨।
ଯାଇ ନନ୍ଦନବନ ଏକ ଦେଶେ । ମନ୍ଦାକିନୀ କୂଳେ କାମସନ୍ତ୍ରାସେ ।୩୩।
ସରସିଜ ଦଳତଳେ ଶୟନ । କରି ଚିନ୍ତନ୍ତି ନାରୀରତନ ।୩୪।
ସ୍ୱୟମ୍ବର ଦିନ ସିନା ଚଳିବେ । ଚିନ୍ତା କରି ରହିଲେ ସେହିଠାବେ ।୩୫।
ଏକଦିନେ ବ୍ରହ୍ମାଙ୍କର ବାହନ । ବଂଶ ଉଦ୍ଭବ ଏ ହଂସରାଜନ ।୩୬।
ମାନସରରୁ ଆକାଶ-ଗଙ୍ଗାକୁ । ଆସି ସେଠାରେ ଦେଖିଲା ଇନ୍ଦ୍ରଙ୍କୁ ।୩୭।
କରେ ଧରିଛି ଗୁରୁ ଚିତ୍ରପଟ । ପଦ୍ମଶଯ୍ୟନେ ହୁଏ ଛଟପଟ ।୩୮।
ତାହା ଦେଖି ପଚାରିଲା ଜଣକୁ । ସେହି କାହୁଁ ଜାଣିଲା ଚରିତକୁ ।୩୯।
ମନେ ବିଚାରଇ ସାରସଭୂପ । ଦେଖି ଦେଖିବା ସୁନ୍ଦରୀ ସ୍ୱରୂପ ।୪୦।
ଏତେ ବିଚାରି ଚଳିଲା ସତ୍ୱରେ । ହେଲା ରସତରଙ୍ଗ କଟକରେ ।୪୧।
ପଦ୍ମପତ୍ରେ ଲୁଚିଇ ଶରୀରକୁ । ସ୍ନାନକାଳେ ଦେଖିଲା ପ୍ରମଦାକୁ ।୪୨।
ମନେ ବିଚାରଇ ଶ୍ୱେତଗରୁତ । ଏହା ଶରୀର ଅତି ଅଦଭୁତ ।୪୩।
ବ୍ରହ୍ମଲୋକୁଁ ପାତାଳ ଯାଏ ମୋର । ନାହିଁ ଦେଖିଲା ଏମନ୍ତ ସୁନ୍ଦର ।୪୪।
ନେତ୍ର କୃତାର୍ଥ କଲା ଦରଶନେ । ପୁଣ ବିଚାର ହେଉଅଛି ମନେ ।୪୫।
ଏହା ରୂପ କଲା ଯେଉଁ ବିରଞ୍ଚି । ସେହି ସମାନେ ପତି ଥିବ ରଚି ।୪୬।

ସ୍ୱର୍ଗ ପାତାଳେ ମୁଁ ତ ଦେଖି ନାହିଁ । ହେ ହିଁ ଜନମିଥିବ ଏହି ମହୀ ।୪୭।
ତାର ଦେଖିବା ବଦନମଣ୍ଡଳ । ପକ୍ଷୀଜନ୍ମକୁ କରିବା ସଫଳ ।୪୮।
ଏତେ ବିଚାରି ଉଡ଼ିଲା ସତ୍ୱରେ । ପରବେଶ ରତ୍ନମାଳା ପୁରେ ।୪୯।
ଅବ୍ଜଭୂଷଣ ରାଗ-ପଦଧର । କବି ଲୋକନାଥକୁ ରକ୍ଷା କର ।୫୦।

□□□

ବିଶ୍ୱନାଥ ଖୁଣ୍ଟିଆ

# ଲବ-କୁଶଙ୍କ ରାମାୟଣଗାନ

( ବିଚିତ୍ର ରାମାୟଣ )

( ରାଗ—ବରାଡ଼ି )

ଋଷ୍ୟଶୃଙ୍ଗ ଚରୁ ଦେବା ରାମଂ ଜନମ ହୋଇବା,
କଉଶିକ ମାଗି ଘେନିଯିବା,
ପଥେ ତାଡ଼କା ମାରିବା, ମାରୀଚ ଉଡ଼ାଇଦେବା,
ଯାଗ ରଖି ଅଭୟ କରିବା ସେ, ସଜ୍ଜନ,
ଶୁଣନ୍ତି ଆନନ୍ଦ ହୋଇ ମନ, ସବୁରି ଅଶ୍ରୁ ପତନ,
ସ୍ଫୁରେ ତନୁରୁହମାନ, ଶୁଣି ତାଙ୍କ ବିଚିତ୍ର ଗାୟନ, ସେ ।୧।
ତାରି ଗଉତମ-ନାରୀ, ଜାହ୍ନବୀ ହୋଇଲେ ପାରି,
ମିଥିଳାରେ କଲେ ଧନୁଭଙ୍ଗ,
ଜାନକୀ ବିଭା ହୋଇବା, ବାହୁଡ଼ାବେଳେ କରିବା,
ପଥେ ଭେଟି ପର୍ଶୁରାମ ସଙ୍ଗ ସେ ।୨।
ଚୂର୍ଣ୍ଣ କରି ତାଙ୍କ ଗର୍ବ, ଅଯୋଧ୍ୟା ପ୍ରବେଶ ସର୍ବ,
ପିତା-ସତ୍ୟ ରଖି ବନେ ଗଲେ,
କରିଣ ବିରାଧ ନାଶ, ବୁଲିଣ ତେର ବରଷ,
ପଞ୍ଚବଟୀରେ ଆଶ୍ରମ କଲେ ସେ ।୩।

ଛେଦ ଅସୁରୀ ଶ୍ରବଣ, ଖର ଦୂଷଣ ମରଣ,
ମାୟାମୃଗ ଦେଖାଇ ରାବଣ,
କଲାକ ସୀତାହରଣ, କବନ୍ଧ ହେଲା କାରଣ,
ସୁଗ୍ରୀବ ସଙ୍ଗରେ ମିତ୍ରପଣ ସେ ।୪।
ସୁଗ୍ରୀବେ ପରୀକ୍ଷା ଦେବା, ସପତଶାଳ ଛେଦିବା,
ବାଳି ମାରି ସୁଗ୍ରୀବ ସ୍ଥାପିବା,
ହନୁ ସମୁଦ୍ର ଡେଇଁବା, ଲଙ୍କାରେ ସୀତା ଖୋଜିବା,
ଲଙ୍କା ପୋଡ଼ି ଅକ୍ଷୟ ମାରିବା ସେ ।୫।
ବାହୁଡ଼ି ଦେଲେ ବାରତା, ସୁଗ୍ରୀବ ରାମ କୁପିତା,
ସାଗରେ ସେତୁ ବନ୍ଧନ କଲେ,
ଋକ୍ଷ କପି ଚାଲି ଗଲେ ସୁବଳ ଗିରି ରହିଲେ,
ଲଙ୍କାଗଡ଼ ବେଢ଼ିଣ ଯୁଝିଲେ ସେ ।୬।
ହୋଇଲା ଅନେକ ରଣ, ମାଇଲେ ଅସୁରଗଣ,
ପୁତ୍ର ଭ୍ରାତ ସହିତେ ରାବଣ,
ଶାନ୍ତି ଦେଇ ବିଭୀଷଣ, ବାହୁଡ଼ିଣ ରାମରାଣ,
ଅଯୋଧ୍ୟାରେ କଲେ ରାଜପଣ ସେ ।୭।
ଜନମୁଖେ ଅପଯଶ, ଶୁଣି ସୀତାଙ୍କୁ ନିବାସ
ବାଲମୀକ ଆଶ୍ରମର ପାଶ,
ଲବଣ ଅର୍ଥେ ବିଦ୍ୱେଷ ଶତ୍ରୁଘନ ପରବେଶ,
ସେ ନିଶି ଜନମ ଲବ-କୁଶ ସେ ।୮।
ଶୂଦ୍ର ତପୀକି ମାରିବା, ଅଶ୍ୱମେଧ ତ କରିବା,
ଆପଣା ଚରିତ ଶୁଆଇବା,
ଲବ କୁଶ ତ ପାଇବା, ବଇଦେହୀ ଅଣାଇଁବା,
ଦେବୀ ପୃଥ୍ୱୀରେ ଗୋପ୍ୟ ହୋଇବା ସେ ।୯।
ମହୀକି କରନ୍ତେ କ୍ରୋଧ, ବୋଧିଲେ ସର୍ବ ବିବୁଧ,
କାଳଦୂତେ ଆସି କଲା ଭେଦ,
ଲକ୍ଷ୍ମଣଙ୍କ ଅପରାଧ, କରନ୍ତେ ନକଲେ ବଧ,
ତେଜନ୍ତେ ସେ ଗଲେ ବିଷ୍ଣୁପଦ ସେ ।୧୦।
ପୂର୍ବ ପଶ୍ଚିମ ଉତ୍ତର, ଦକ୍ଷିଣ ଦେଶ ଆଦର
ପୁତ୍ରମାନଙ୍କୁ କଲେ ନୃପତ,
ଅଯୋଧ୍ୟାରେ ଯେତେ ନର, ବୃକ୍ଷ ପାଷାଣ ଆଦର,
ବଇକୁଣ୍ଠ ନେଲେ ରଘୁପତି ସେ ।୧୧।

ଏମନ୍ତ ରାମଚରିତ, ଗାଇ ଲବ-କୁଶ ଗୀତ,
ସଭାଜନେ ଶୁଣିଣ ଚକିତ,
ଯା' ନାମେ ହରେ ଦୁରିତ, ଅଦ୍ଭୁତ ଏହି ଚରିତ
ଦୀନ କୃଷ୍ଣ ଘୋଷେ ଅବିରତ ଯେ ।୧୨।

□□□

ବ୍ରଜନାଥ ବଡ଼ଜେନା

# ସମର ପ୍ରସ୍ତୁତ

( ସମର ତରଙ୍ଗ )

( ରାଗ—ପାହାଡ଼ିଆ କେଦାର )

ଯାରା ଫଉଜ ହେଲେ ତୟାର ମୁସଦ୍ଦମୁଧା ହେଲେ ବାହାର
ପାଗାସୁଆର କ ଜମାଦାର କ ସରଦାର ଯେ ।
ଯେ ଯାହା ମୁରାତମା ସମ୍ଭାର ଦୌଲତ ଯେନ ହେଲେ ହାଜର
ମଜୁରା କରି ହୁକୁମା ପାଇ ଯାନ୍ତି ସତ୍ୱର ଯେ ।
କେହୁ ଚଢ଼ିଛୁ ତାଜି ବାଜୀ ଉପର ଯେ,
ରଙ୍ଗ ଅଙ୍ଗା ଅଙ୍ଗକୁ ଦିଶେ ସୁନ୍ଦର ଯେ ।
ଢାଲେକ ପୂରି ବାମ ହାତରେ ଭାଲ କଷିଛୁ ଦକ୍ଷିଣ କରେ
ଲାଲପଗଡ଼ି ଭଲା ମାନଛୁ ଶିରକୁ ତାର ଯେ ।୧।
କେ ଅଛୁ କଛି ବାଜୀକି ଚଢ଼ି ଧରି ନେଉଛୁ ଯୋଡ଼କ ଘୋଡ଼ି
ଇଶାରା କଲେ ମସ୍ତକ ଗୁଡ଼ି ଯିବ ସେ ଉଡ଼ି ଯେ ।
କେହୁ ଭୁରୁକ ପିଠିରେ ବସି ଢାଲ ବରଛୁ ଧରିଛୁ କଷି
କର୍ଣ୍ଣରେ ନଣ ଦେଇଛୁ ଖୋସି ଲମ୍ବିଛି ଦାଢ଼ି ଯେ ।
କେହୁ ସୁଆର ହୋଇ ଅଣଆଲୁବ ଯେ,
ଯେତେ ସମ୍ଭାଳିଲେ ସେ ନୋହେ ସ୍ଥକିତ ଯେ ।

ଫୁ ଫୁ ଶବଦ ମୁଖୁ ବାହାର ବିଜୁଳି ପରି ଚରଣ ତାର
ହୁଅନ୍ତେ ଚୂ ଚୂକାର ପିଠିରେ ଠକୁଛି କର ଯେ । ୨ ।
ଗ୍ଭଲି ଚଲାଇ ଗ୍ଭଲୁଛି କେହି କାହା ଝାଙ୍ଗଣ ଯାଉଛି ବହି
କେ ଘୋଡ଼ୀ ଅଢ଼ ରହନ୍ତେ ଲେଢ଼ ଯୋଢ଼ ଲଗାଇ ଯେ ।
କେଉଁଠି ଗ୍ଭଲେ ଦୁଇ ଗୋଡ଼ରେ ସୁଆର ଖସି ପଡ଼ିବା ଡରେ
କଣ୍ଠକୁ ଭିଡ଼ ଧରି ଦୃଢ଼ରେ ସମ୍ଭାଳି ରହି ସେ ।
କାହା ଘୋଡ଼ା ଘୋଡ଼ୀକି ଦେଖି ଆଗରେ ଯେ,
ମଝେ ମିଶି ଆସନ୍ତେ ଅତି ବେଗରେ ଯେ ।
ବାଗ ହାତକୁ ଅଳପ ମୋଡ଼ି ଆଡ଼େ ସଳଖେ ଲଗାନ୍ତେ ଲେଢ଼
ପବନ ପରି ଗଲା ସେ ଉଡ଼ି ସେହି ଲଗରେ ଯେ । ୩ ।
କାହା ହ୍ରେଷାର ସ୍ୱନେ ସଂସାର, କମ୍ପି ଉଠୁଛି କେଉଁ ବସାର
ଫରି ଛଟକେ କେ ବାଜି ତାର ପରି ଗତିରେ ଯେ ।
ଜଳ ଭଉଁରି ପରି କେ ଖର ଫେରି ପଡ଼ଇ ଅତି ପ୍ରଖର
ବାମ ଦକ୍ଷିଣେ କରଇ ଗତି ଦୃଷ୍ଟି ମତିରେ ସେ ।
କେହି ନାଟୁଆ ପରି ଦଣେ ଗତିରେ ଯେ,
କାହା ଚରଣ ଅସ୍ଥି ନୋହେ ଛିତିରେ ଯେ ।
କେ ବଙ୍କେ ଆସେ ଗ୍ରୀବାକୁ ମୋଡ଼ି ଡେଇଁଯାଉଛି ଯୋଡ଼କ ଯୋଡ଼ି
କେ ସ୍ରୋତ ନଦୀ ନାବ ପରିସ୍ୱେ ଗ୍ଭଲି ଗତିରେ ଯେ ।୪।
ଅତ୍ୟନ୍ତ ମତ୍ତ ମାତଙ୍ଗକୁଳ ଚଳନ୍ତି ଧୀରେ ହୋଇ ପ୍ରବଳ
କଏ ପ୍ରଚଳ ପର୍ବତମାଳ ମାଳ ସଙ୍କୁଳ ଯେ ।
କବା ଧରଣୀ ତରୁଣୀ ନୀଳ ଦୁକୂଳ ପିନ୍ଧି ଦଣେ ମଞ୍ଜୁଳ
କ ସେ ଆକାଶୁ ଛାଡ଼ପଡ଼ୁଛି ଜଳଦଜାଳ ଯେ ।
ଏହି ସମୟେ ମଦଜଳ ବରଷେ ଯେ,
ଅବଲୋକନେ ଆଶ୍ୱସୁଛି ମାନସେ ଯେ ।
ପୁଣି କ ସିନ୍ଧୁ ମନ୍ଥିଲେ ଦେବେ ସିନ୍ଧୁର କୁଳ ଜନମି ଏବେ
ଅସଂଖ୍ୟ ହୋଇ ଆସୁଅଛନ୍ତି ଅତି ହରଷେ ଯେ । ୫ ।
କେଉଁ ହସ୍ତୀକି ମୋତି ଝାଲର ମାନଛି କାହା ମୁଣ୍ଡେ ସିନ୍ଦୂର
ଘଣ୍ଟି ଘାଗୁଡ଼ି କାହାର ଯୋରହନ୍ତ ବିଚିତ୍ର ଯେ ।
ପ୍ରବଳ ଶୁଙ୍ଗ କେଉଁ ମାତଙ୍ଗ ରଙ୍ଗ ସଜରେ ସାଜିଛି ଅଙ୍ଗ
ଗ୍ଭଲି କି ତାର ଗଙ୍ଗା ତରଙ୍ଗ ଯୋଖିବା ମାତ୍ର ଯେ ।
କେଉଁ ଗଜରାଜର ବସନ୍ତି ସଜ ଯେ,
ପରି ଭୂଷଣେ ଅତି ତୋରି କା ତେଜ ଯେ ।

ତାହାଙ୍କ ମଦ ଗଣ୍ଡରୁ କରି          ବଧିର ହୋଏ ନଷ୍ଟେ ବଇରି
କୂଳକମଳ ବନକୁ ଦଳି ଦେବେ ଏ ଆଜ ଯେ । ୭ ।
ବରଷାକାଳ ନଦୀ ପରାଇ          ବାଟେ ଅବାଟେ ଗଲେ ସେ ବନ୍ଧୁ
ଦଶ କୋଣରେ ରହିଲା ନାହିଁ ତରୁ ତୃଣ ହିଁ ଯେ ।
ଚଳନ୍ତେ ତାଙ୍କ ଚରଣାଘାତେ          ମହୀ ହିମାନ ହେଲେ ପର୍ବତେ
ପିଇଯିବାରେ ଶୁଖିଲେ କେତେ ପୋଖରୀ ନଈ ଯେ ।
ପଥର ହିଁ ରହିଲା ନାହିଁ ପଥରେ ଯେ,
କାହା ଧୂଳି ରହିବ ଅବା ଏଥିରେ ଯେ ।
ଧୂମାନ୍ତ କରି ମୂଳକଯାକ          ଧନ କାଞ୍ଚନ ଲୁଟି ଅନେକ
ଯାଇଁ ପଡ଼ିଲେ ଷାଠିଏ ବାଟି ବଲ ଭିତରେ ଯେ । ୭ ।

□□□

ଅଭିମନ୍ୟୁ ସାମନ୍ତସିଂହାର

# ଯଶୋଦାଙ୍କ ବାତ୍ସଲ୍ୟ

( ବିଦଗ୍ଧ ଚିନ୍ତାମଣି : ସପ୍ତଷଷ୍ଠିତମ ଛାନ୍ଦ )

( ରାଗ-ଜୟନ୍ତ—କଳାକାଇଞ୍ଚ ବାଣୀ )

ଧୀରେ ଧେନ କାନନରେ କୃଷ୍ଣ ବିଳମ୍ବିତ,
ବାତ୍ସଲ୍ୟ-ମମତା ଧେନ ଖଣ୍ଡୁଛନ୍ତି ମାତ, କଳାମାଣିକ ରେ ।୧।

ନିଧନ ଯଙ୍ଖାଳ ମୋର ଦରିଦ୍ରପସରା,
ଅନ୍ଧ ଲଉଡ଼ି ବାବୁ ରେ ହୃଦରତ୍ନହାର ।୨।

ମୋ ଜୀବଜୀବନ ରୁଦ୍ଧ ନୟନପ୍ରତିମା,
ତୋତେ କି ପାସୋରି ହେବ ମୋର ସୁଖସୀମା ।୩।
ଡରୁଥାଉ ଅନ୍ଧାରକୁ ରଖି ଯାଉ ଗୋରୁ,
ଜନକ ଜନନୀ ସୁଖ କାହିଁ ପାଇଁ ସାରୁ ।୪।

ବୃଦ୍ଧକାଳେ ତୁ ମୋହର ଏକଲୁ ନନ୍ଦନ,
ଦୁଃଖତାପ ବିନାଶନେ ତୁ ହରିଚନ୍ଦନ ।୫।
ଘୋଟିକା, ଅଧାମ, ଯର ନ ରୁଚଇ ତୋତେ,
ନାଚ. ଲଞ୍ଝ ମାଗୁଥାଉ ଲବଣୀ କେମନ୍ତେ ।୬।
ତୋଳ ମୁଁ ଧଇଲେ ଗୋଳ ହୋଇଯାଉ ରୁନ୍ଧ,
ତୋ ଦୁର୍ବଳ ଦେଖି କାହିଁ ପଶିବଇଁ ମୁହିଁ ।୭।
ଡାକନୀ ଲେଭନ୍ତି ବୋଲି ଡରୁଥାଉ ମନେ,
ବାରବାର ବାରୁଥାଇ ଯିବା ପାଇଁ ବନେ ।୮।
ନିଶାଚର ମାଡବାର ଶୁଭୁଛୁ ଶ୍ରୁତକ,
ମୁଁ ଡାକ୍ତଣୀ ଛାଡ଼ିଦେଲି ବନକୁ କାହିଁକି ? ।୯।
ଝାଳ ବହୁଥିବ ଅଙ୍ଗୁ ଲଗି ଝାଞ୍ଜି ଖରା,
ଶ୍ରମ ପାଇ ତରୁତଳେ ବସିଥିବୁ ପରା ।୧୦।
ନେଲୁନାହିଁ କାହିଁପାଇଁ ତୋ କଠାଉ ଛତା,
ବନେ କଣ୍ଟା ଲଗି ହୋଏ ମୃଦୁପାଦ ଚନ୍ତା ।୧୧।
କାନ ଡେରିଥାଇ ଏକା ତୋ ବେଣୁସ୍ୱନକୁ,
ଆଜ କପାଁ ଶୁଭୁନାହିଁ ଖବୁଛୁ ମନକୁ ।୧୨।
ତୋ'ଠାରୁ ଅଧିକ ବାଇ ତୋର ବଡ଼ଭାଇ,
ବୋଧ କଢ଼ଗଲି ନାହିଁ କାହିଁକି ରଖାଇ ।୧୩।
ତୋ ମାଧୁରୀ ସ୍ୱରୂପ ଦେଖି ସୁଖୀ ଆଖି,
ଅନ୍ଧ କରିଗଲୁ ବଳା ମମତା ନ ରଖି ।୧୪।
ଛାଇକି ଅନାଇ ଛାତି ଫୁଲାଇ ତ୍ରିଭଙ୍ଗେ,
ମୁରଲୀ ବଜାଉଥାଉ କି ଗୁରୁଷି ରଙ୍ଗେ । ୧୫।
କୋଳ ପାଇଁ ଅଳକରି ଗଡ଼ୁ ତୁ ଧୂଳିରେ,
ବେଶ ହେଉଥାଉ ବସି କୁସୁମମାଳରେ ।୧୬।
ନଟବର ପରିପାଟୀ ବେଶ ମନୋହର,
ରଙ୍ଗିମା ଅଧରେ ହାସ କି ଜାତ ସୁନ୍ଦର ।୧୭।
ନୟନ ସୁନ୍ଦର ମାନେ ଭ୍ରୂଲତା ନାଟକୁ,
ଅଳକା ଆବୃତ ଶୋଭା ଲଲାଟପଟକୁ ।୧୮।
ନାକେ କାବ୍ୟତାରା ମୋତି ବସଣୀକ ଶୋଭା,
ମୋ ଆଖି ଦେଖିବା ପାଇଁ ନିରବଧି ଲୋଭା ।୧୯।
ମକରକୁଣ୍ଡଳ ଯୁଗ୍ମ ଆନ୍ଦୋଳ ଗଣ୍ଡରେ,
ଦେଖି ଆନନ୍ଦରେ ଭାଷା ନ ଆସେ ତୁଣ୍ଡରେ ।୨୦।

ଗୁଞ୍ଜବେଢ଼ା ବାଙ୍କଚୁଡ଼ା ଖୋସା ଜାମୁଡ଼ାଳ,
କି ସୁନ୍ଦର ଦିଶୁଥାଇ ଆସ୍ୟ ଢଳଢଳ ।୨୧।
କେଉଁ ସ୍ବଚ୍ଛ କେକିପୁଚ୍ଛ ସୁଗୁଞ୍ଜବିପାନ୍ତି,
ଆସିବ କାହା ପାଇଁକି କେତେ ପରପାନ୍ଥୀ ।୨୨।
କସ୍ତୁରୀତିଲକ ନାସେ ଭାଲେ ଗୋରଚନା;
ଭାଲରେ ଚନ୍ଦନପାନ୍ତି ମନ ବଶ ସିନା ।୨୩।
ରଙ୍ଗମାଟି କି ରଙ୍ଗରେ ହୃଦରେ ଚିତ୍ରିତ,
କଉସ୍ତୁଭ ବନମାଳ ସୁଷମା ବିଚିତ୍ର ।୨୪।
କାଞ୍ଚନ କଙ୍କଣ କରେ କଟିରେ କଙ୍କିଣୀ,
ନୂପୁର ଶବଦ ମୋର ମନ ନିଏ କିଣି ।୨୫।
ସୁନ୍ଦର ସୁନ୍ଦର ଭଙ୍ଗୀ ନ ଦେଖି ତୋହର,
ବାଇବୁଦ୍ଧି ହୋଇଲାଣି ଆସି ତ ମୋହର ।୨୬।
କଣ୍ଠ କରିଥିଲୁ ପରା କାନ୍ଧିକି ନଇଲୁ,
କାହା ସଙ୍ଗତରେ ଅବା ପୁଣି କଳି କଲୁ ।୨୭।
କି ଦୂର ବନକୁ ଗଲୁ ତଥ୍ୟ ନ ଜାଣିଲି,
ମୁଁ ପାପିଷ୍ଠୀ କାହିଁପାଇଁ ତୋ ସଙ୍ଗେ ନ ଗଲି ।୨୮।
ରକ୍ଷକର ଗୃହୁଁ ଅଛୁ କ୍ଷତମୃଗ ପରି,
ଧନ ସରୁନାହିଁ ଲବ ହେଲା ମୃଗ ସରି ।୨୯।
କେ ଯାଇ କହନ୍ତା ତୋତେ ମୋହର ବେଦନା,
ଅବଶ୍ୟ ହୁଅନ୍ତୁ ତୁହି ମାତା-ସ୍ନେହ ଘେନା ।୩୦।
ଦଉଡ଼ିଯିବ କି ବନେ ହେଉଛୁ ଆତୁର,
ପୟୋଧରୁ କ୍ଷୀର ସ୍ରବ ପଡ଼େ ଧାର ଧାର ।୩୧।
ମନ ଛନ୍ନଛନ୍ନ ବନ ନେତ୍ର ନ ରହିଲା,
ତୋ ଅଇଲା ପରା ଶୁଭି ମୋତେ ପ୍ରତେ ହେଲା ।୩୨।
ଖଗମାଳେ ସୂତମାଳେ ରହିଲା ନୟନ,
କୁପୂର୍ବ ଭାଷାରେ ମୋର ବନ୍ଦୀ ହେଲା କାନ ।୩୩।
ଅନେକ ଆପଦୁଁ ତୋତେ ରଖିଲେ ଅମ୍ବିକା,
ନାମ ଦେଇଅଛୁ କାହ୍ନୁ କହ୍ନା ଜଣାବିକା ।୩୪।
ଅପତ୍ୟାଣି ବୋଲି ମୁଁ ବିନ୍ଧିଲି ନାକ କାନ,
ଖଞ୍ଜିଲି ବସଣୀ ବାଲୀଲେଖନେ ଶୋଭନ ।୩୫।
ମନ୍ଦଦୃଷ୍ଟି ନ ବାଧିବ ବିଗ୍ରହେ ମୋହର,
କଳାବିନ୍ଦୁ ଦେଇଥାଇଁ କପାଳେ ତୋହର ।୩୬।

ଗୋରଜ ଲେପଇଁ ଅଙ୍ଗେ ଆପଦ ହରଣେ,
ପଦରଜ ଦେଉଥାନ୍ତି ବୃନ୍ଦା ଗୋପୀଗଣେ ।୩୭।
ଭୁଙ୍ଗକାଛ ନ ଦଅଇଁ ଡାକନୀଙ୍କି ଡର,
ରୁକ୍ଷ ବେଶ କରଥାଇଁ ଲୋଭକୁ ନ ବାର ।୩୮।
କୋଳେ ଶୋଇଥାଉ ନନ୍ଦ ଭାଙ୍ଗିଗଲେ ଡୋର,
ଚମକ ମୋ ଗଲା ଛନ୍ଦ ତାକୁ ମାଣ୍ଡା ଗିର ।୩୯।
ଏମନ୍ତ ନନ୍ଦନ ପୁଣି ବନବାସୀ ହେବ,
ଜନନୀ ଜୀବନ ଧର କପର ରହିବ ।୪୦।
କାହାକୁ କ ସୁତ ଦେଇନାହାଁ ରେ ଦଇବ,
ତୋ ପର ଅକ୍ରୁଷା ପୁଣି କେ କାହିଁକ ହେବ ।୪୧।
ବିଭ୍ରମରେ ସନ୍ନିକଟ ଦୂର ନ ଜାଣିଲେ,
ଆସ ବାପ ଭାଇ ଧନ ଡ୍ରଇକ ବୋଇଲେ ।୪୨।
ଅସ୍ନେ ନୟନ ଦେଲେ ଦଉଡ଼ି ଦାଣ୍ଡକୁ,
ହୃଦେ କର ମାର ଯତ୍ନ ନ କଲେ ପିଣ୍ଡକୁ ।୪୩।
ରୋହିଣୀ ବାରଲେ ଆସି କହି ବୋଧକର,
ଧୀରେ ଘେନ ଏ ବାତ୍ସଲ୍ୟ ବଚନ ମାଧୁରୀ, କଳାମାଣିକ ରେ ।୪୪।
ସାମନ୍ତସିଂହାର ଢନ କରିଛି କାମନା,
କୃଷ୍ଣପ୍ରେମରସ ବିନା ହୋଇବ ଭାବନା, କଳାମାଣିକ ରେ ।୪୫।

□□□

# ଆହେ ନୀଳଗିରି

ଆହେ ନୀଳଗିରି !
ତୁମ୍ଭ ଶ୍ରୀଭୁଜେ ଦକ୍ଷିଣା କେଉଁ କେଉଁ ।।
ତୁଳସୀ ଚଉରା ପାଶେ ଜଗି
ବସି ଧାଉଛନ୍ତି କେତେ ଯୋଗୀ,
ବ୍ୟାଘ୍ରଚର୍ମ ପାରି ସ୍ତୁତି କରୁଛନ୍ତି ଜପୁଛନ୍ତି ନାମ ସଂଖ୍ୟା କରି । ୧ ।
ବଡ଼ଦାଣ୍ଡ ଦେଖି ହେଲି ତୋଷ,
ରେଣୁମାତ୍ର ତେଣୁ କଲି ଗ୍ରାସ;
ଖିରି ଖେଚଡ଼ିରେ ମନ ନ ବୋଧଇ ଟଙ୍କ ତୋରାଣିରେ ମନ ତୋଷ ।୨।
ସିଂହଦ୍ୱାରେ ପଡ଼େ ବେତବାଡ଼ି,
ବାଜନ୍ତେ ପାଇକ ଯାଏ ଛୁଡ଼ି,
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଏକକୁ ଆରେକ ହୁଡ଼ାହୁଡ଼ି । ୩ ।
ବାଇଶି ପାବଚ୍ଛୁ ଗଲି ସୁଖେ,
କୈବଲ୍ୟ ପସରା ବେନି ପାଖେ,
ଗୃହସ୍ଥ ବ୍ରାହ୍ମଣ ଶୂଦ୍ର ପରିଯନ୍ତେ କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ।୪।
ରୋହିଣୀ ପାଦୁକା କୁଣ୍ଡରଜ
ସିଂହ ମାଡ଼ି ବସିଅଛି ଗଜ,
ସତେ କି ଏ ଜନ୍ମ ସୁଫଳ ଲଭିବ କାକ ପକ୍ଷୀ ହେଲା ଚତୁର୍ଭୁଜ ।୫।
ଗରୁଡ଼ ପଛରେ ରହି ଦେଖ,
କି ଶୋଭା ପାଉଛି ପଦ୍ମମୁଖ,
ହୀରା ନୀଳା ମୋତି ମାଣିକ୍ୟ ଜଳୁଛି ହୃଦେ ଲମ୍ବିଅଛି ହାରନେକ । ୬ ।
ଶ୍ରୀଜଗନ୍ନାଥଙ୍କ ଠାକୁରାଣୀ
ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଆଣି,
କଳପବଟକୁ ପ୍ରଦକ୍ଷିଣ କଲେ ସାଧୁସନ୍ଥ ଦେଲେ ହରିଧ୍ୱନି । ୭ ।
କହେ ସାଲବେଗ ହୀନ ଜାତି
ଶ୍ରୀରଙ୍ଗାଚରଣେ ରହୁ ମତି,
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି ବାରେ ଦୟାକର ଲକ୍ଷ୍ମୀପତି । ୮ ।

□□□

# ଆହେ ନୀଳଶଇଳ ପ୍ରବଳମତ୍ତବାରଣ

ଆହେ ନୀଳଶଇଳ ପ୍ରବଳ ମତ୍ତବାରଣ,
ମୋ ଆରତ-ନଳିନୀ-ବନକୁ କର ଦହନ ! ୧ ।

ଗଜରାଜ ଡାକ ଦେଲା ଗ୍ରାହ ଯୁଦ୍ଧ ବେଳେଣ,
ଚକ୍ର ପେଷି ନକ୍ର ନାଶି କୃପାକଲ ଆପଣ । ୨ ।

ଦ୍ରୌପଦୀ ଯେ ଚିନ୍ତାକଲା କୁରୁସଭା ତଳେଣ,
କୋଟି ବସ୍ତ୍ର ଦେଇ ତାଙ୍କ ଲଜ୍ଜା କଲ ବାରଣ । ୩ ।

ହରିଣୀକି ଘୋରବନେ ପଡ଼ିଥିଲା କଷଣ,
ଡାକିଲା ମାତ୍ରକେ ହରି ରକ୍ଷାକଲ ଆପଣ । ୪ ।

ରାବଣର ଭାଇ ବିଭୀଷଣ ଗଲା ଶରଣ,
କେତେ କେତେ ବିପତ୍ତିରୁ ରଖିଅଛ ଆପଣ । ୫ ।

ଅଜାମିଳ ଡାକ ଦେଲା ଜୀବ ଯିବା ବେଳେଣ,
ତେତେ ବଡ଼ ପାପୀ ଗଲା ବଇକୁଣ୍ଠ ଭୁବନ । ୬ ।

ପ୍ରହଲ୍ଲାଦ ପିତା ଯେ ଯେ ବଡ଼ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ । ୭ ।

ନୀଳାଚଳେ ବିଜେକରି ବୌଦ୍ଧ ଅବତାରେଣ,
ବେନି ଭୁଜ ଟେକି ପ୍ରଭୁ ଯାଚୁଅଛ ଶରଣ । ୮ ।

□□□

ବନମାଳୀ ଦାସ

## ବେଶ-ପ୍ରଶଂସା

( ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧା )

ଶ୍ୟାମ ନାଗର ହେ ! ଏ ବେଶ ହୋଇବ ନାହିଁ ।
ଏ ବେଶ ହୋଇଲେ ପାଷାଣ ତରଳେ ଯୁବତୀ ବଞ୍ଚିବେ କାହିଁ ? (ଘୋଷା)
ଉଭା ହୋଇଥିବ କଦମ୍ବର ମୂଳେ ନଟବର ବେଶ ହୋଇ ।
ଘେନିଥିବ ଯେବେ ମୋହନ ମୁରଲୀ ଅଧରେ ଚୁମ୍ବିବ ନାହିଁ । ୧ ।
ପିନ୍ଧିଥିବ ଯେବେ ପୀତାମ୍ବର ତୁମ୍ଭେ ଭୂମିରେ ଲୋଟିବ ନାହିଁ ।
ହସୁଥିବ ଯେବେ ମୃଦୁ ମୃଦୁ ହୋଇ ତେରଛେ ଚାହିଁବ ନାହିଁ । ୨ ।
ଘେନିଥିବ ଯେବେ ଚନ୍ଦନର ବିନ୍ଦୁ ଗୋରଚନା ଥିବ ନାହିଁ ।
ବାନ୍ଧିଥିବ ଯେବେ ତ୍ରିଭଙ୍ଗିମା ଚୂଳ ଚନ୍ଦ୍ରିକା ଖୋସିବ ନାହିଁ । ୩ ।
ଯେତେ ବେଶ ତୋତେ ମନାକଲି ଶ୍ୟାମ ତେତେ ବେଶ ହେଲୁ ତୁହି ।
ବୋଲେ ବନମାଳୀ ଶୁଣ ଗୋ ରାଧିକେ ! ଏ ବେଶ ତୁମ୍ଭର ପାଇଁ । ୪ ।

□□□

## ଜଗନ୍ନାଥ ଜଣାଣ

ଜଗନ୍ନାଥ ହୋ, କିଛି ମାଗୁନାହିଁ ମୁଁ ତୋତେ
ଧନ ମାଗୁନାହିଁ ଜନ ମାଗୁନାହିଁ
ମାଗୁଛି ଶରଧା ବାଲିରୁ ହାତେ ।।
ଆନ ଦରଶନ ନ ଲୋଡ଼େ ନୟନ ଏକା ତୁମ୍ଭ ଦେଖା ବିନା
ଶୁଣିବାକୁ କାନ ନ ଇଚ୍ଛଇ ଆନ ତୁମ୍ଭ ଚରିତେ କାମନା । ୧ ।
ଜିହ୍ୱା ନ ବାଞ୍ଛଇ ଗ୍ରାମ୍ୟ ଗୀତ ଗାଇବାକୁ ରଜନୀ ଦିବସ
ତୁମ୍ଭ ନାମାବଳୀ କେବଳ ସମ୍ଭାଳି ହୋଇଥାଉ ପୀତବାସ । ୨ ।

ନାସା ମୋର ତୃପ୍ତି ନ ଲଭଇ ଆନ ସୁବାସ ଦ୍ରବ୍ୟ ଆଘ୍ରାଣେ
ତୁମ୍ଭ ଛଡ଼ାମାଳ ତୁଳସୀ କୁସୁମ ଚନ୍ଦନ କର୍ପୁର ଘାନେ । ୩ ।
ମୋ ହସ୍ତ ଅଞ୍ଚଳ ରାମ ବନମାଳୀ, ହରେକୃଷ୍ଣ ଜପୁଥାଉ
ବୋଲେ ବନମାଳୀ ମୋ ବେନିଚରଣ ତୋ ତୀର୍ଥ ଭ୍ରମଣେ ଯାଉ । ୪ ।

□□□

କବିସୂର୍ଯ୍ୟ ବଳଦେବ ରଥ

# ଜଗତେ କେବଳ ଜନେ ହସିବେ

( ରାଗ—ଆଷାଢ଼ଶୁକ୍ଳ )

ଜଗତେ କେବଳ, ଜନେ ହସିବେ ଏହୁ ତୁମ୍ଭ ଫଳ ॥
ଜଟିଳ କରି ସ୍କନ୍ଧ ରୋମରାଜି
ଶିଖଣ୍ଡି ଦଣ୍ଡରେ ମଣ୍ଡୁ ଗରଜି
କୁଟିଳ କରି ଭ୍ରୂକୁଟୀକି ତୁମ୍ଭେ    ପରମା କଣ୍ଠୀରବ ହେବ କାହୁଁ ? ୧ ।
ଅଲକ୍ତ ଦ୍ରବ ନୟନେ ବୋଳି
ରସାଳ ଗହଳ ଶାଖାରେ ଖେଳି
କବଳ କରୁ ତା କଳି କଳାପ    କାକ କି କରିବ ପଞ୍ଚମାଳାପ ? ୨ ।
ବରଷାବରଷେ ଦେଇ ମାନସ
ବରଜି ବରଷେ ଅମେଧ ଗ୍ରାସ
ଦେହେ ମନ୍ଦାକିନୀ ରଜ ଲଗାଇ    ଗ୍ରାମ ଶୂକର କି ହୋଇବ ଗାଈ ? ୩ ।
ଚଞ୍ଚୁ ଚରଣେ ଲଗାଇ ହିଙ୍ଗୁଳ
ନିଜ ତୁଣ୍ଡେ ମଣ୍ଡି ଖଣ୍ଡେ ମୃଣାଳ
ଧବଳ ପୂର୍ବ ଅଙ୍ଗ ବୁଲାଇ ବକ    ତେବେ ସେ ମରାଳୀ ହୋଇବ ଟିକି ? ୪ ।

× × × ×

ଯାହାକୁ ଯାହା କରିଛି ଦଇବ
ତୁମ୍ଭ ନିଜ ସେ ଅନ୍ୟଥା ହୋଇବ !
ଯେନଲେ ହେଲେ ଯତ୍ନେ କୋଟିପୁଟ    ପିତ୍ତଳୁ ଟି କେହୁ ହେବ ସୁରଟ ? ୫ ।

ଦେବ ଉପବନେ ହୋଇ ଜନତା
ସୁବାସ ମନ୍ଦାରୁ ଜବଦଲତା ।
ତୁଳସୀ ଫୁଲେ ହେଲେ ମିଶାମିଶି     ତାହାକୁ ଯେବେ ବୋଲୁବା ତୁଳସୀ ? ।୬।
ଦମଜଇ ନାହିଁ ସ୍ୱଜାତ ଭଷା
କହିଲେ ଯେ ହୁଅଇ ଲୋକହସା ।
ଜଡ଼ ମୁଁ ବୋଲି ନ ଜାଣି ଋଗ୍‌ବେଦ     ଷଡ଼ଦର୍ଶୀ ତୁଲେ କଲେ ବିବାଦ ।୭।
ଦେହରେ ବାଜିଲେ ପର ନିଃଶ୍ୱାସ
ଘିଣ୍ଟାଳିବାକୁ ନ ଥାଇ ବିଶ୍ୱାସ ।
ନିର୍ଲଜ୍ଜ ଅନ୍ଧମାନେ ତେଣ ତ୍ରାଣ     ହାତୀ ଲଟେଇକି ବାନ୍ଧିଲେ କାଠ ।୮।
ବୋଲି ହୋଇ ଭୂତ ଧରି ପରଶୁ
ବଳିବର୍ଦ୍ଧ ବର ଚରମେ ବନ୍ଧୁ ।
ଗଉଙ୍ଗ-ପ୍ରାଣନାଥ ଅନୁଭବ     ଠଉର ପାରିବ ନାହିଁ ତା ଲବ ।୯।
ଗଙ୍ଗାର ପ୍ରବାହେ ଅଳପେ ବୁଡ଼ି
ଅଙ୍ଗାର ନିକି ନିଜ ବର୍ଣ୍ଣ ଛାଡ଼ି ।
ବଳାହକ ରଂହ ପରି ଦିଶିବ     ବାଳା ପୟୋଧର ହାରେ ମିଶିବ ? ।୧୦।

(କବିତା କଲ୍ଲୋଳିନୀ)

□□□

ଗୋପାଳକୃଷ୍ଣ ପଟ୍ଟନାୟକ

## ଅଶରଣ ଜନ-ବନ୍ଧୁପଣ

( ରାଗ—ଆନନ୍ଦଭୈରବୀ, ତାଳ—ଏକତାଳୀ )

ଅନୁସରତ, ପ୍ରଭୋ ! କାଳଢାଳ ଗଲା ସରି ତ ।
କଣ ଅନ୍ତରରେ କଲେ କେତେ ଊଣା ହୁଅନ୍ତା କରୁଣା-ଅମୃତ ? । ପଦ ।
ଅଶରଣଜନ ବନ୍ଧୁପଣ ଯଶ ସଂସାରେ ହୋଇଛୁ ଉଦ୍ଧତ ।
ପଥର ହୋଇ ପଥରେ ପଡ଼ିଥିଲା ଅହଲ୍ୟାକୁ ଦେଲ ତାରି ତ । ୧ ।
ପାଞ୍ଚାଳୀଙ୍କ ଦୁଃଶାସନ ଘଞ୍ଚାଳିଲା ବଞ୍ଚାଇଲ ବାସ ଦେଇ ତ ।
ଘୁଞ୍ଚାଇଲ ନାହିଁ ମୋ ଦୁଖର କନ୍ଦନ ପୋଛୁଇଲ ନେତ୍ରୁ ବାରି ତ । ୨ ।

କାହିଁ ଥିଲ ଚକ୍ର, କାହିଁ ଥିଲ ନକ୍ର, ପଲକ ପତନ ନୋହୁ ତ ।
ଛୁଟିଗଲା ମଥା ରହିଗଲା କଥା ଡାକିଲା ମାତ୍ରକେ କଷ୍ଟ ତ । ୩ ।
କାଳ-କିଙ୍କର ଭୟରେ ଅଜାମିଳ ପୁତ୍ରୋପଚ୍ଛରରେ ଡାକ ତ ।
ପରମ-ପଦ ପାଇଲା ଆପଣଙ୍କ ନାମ-ମହିମା ଏପରି ତ । ୪ ।
କରୁଣାବ୍ଧି କୃପାକର ବୋଲି ବିଧି ଭବାବ୍ଧିରେ ଥାଉ କଥିତ ।
ମୁଁ କଲି ଦୋଷ କି ? ନାଶିଛ ତ ବର୍ଜ୍ଜ ବିଷ ପିଆଇ ତା ଦୁରିତ । ୫ ।
ଗୋପାଳକୃଷ୍ଣ କହେ ଜଗନ୍ମଙ୍ଗଳ ଯାହା କରିବ ତୁମ୍ଭ ଚିତ୍ତ ।
ଆପଣ ଦୟାଳୁପଣକୁ ବଳି ମୋ ଦୁଷ୍କୃତ ନୁହଇ ଭାର ତ ? ୬ ।

□□□

# ଭାବପ୍ରେମ ଅମୂଲ୍ୟ

( ରାଗ—ମଙ୍ଗଳଗୁର୍ଜ୍ଜରୀ, ତାଳ—ଏକତାଳୀ )

ଉତ୍ତମାଭକ୍ତିକି ମନ, କର ତୁ ଆଶ୍ରୟ ।
ପରିହରି ଜ୍ଞାନ କର୍ମ ଲଜ୍ଜା ଘୃଣା ଭୟ । ପଦ ।
ଯାବତ ବାସନା ତୋର ସମୂଳେ ବରଜ ।
ଅନୁକୂଳ ଭାବେ ସଦା ରାଧେକୃଷ୍ଣ ଭଜ । ୧ ।
ସର୍ବୋପାଧି ଶୂନ୍ୟ ହୋଇ ରହ ତୁ ତତ୍ପର ।
ହୃଷୀକେ ହୃଷୀକେଶଙ୍କ ସେବାକୁ ଆଦର । ୨ ।
ସାଲୋକ୍ୟାଦି ପଞ୍ଚବିଧ ମୁକତିକି ନ ବାଞ୍ଛି ।
ଚାରି ପୁରୁଷାର୍ଥ ମଣ ତୃଣ ପରି ତୁଚ୍ଛ । ୩ ।
ତ୍ରିବିଧ ସୁଖରେ ତୋର ଦିଅ ଜଳାଞ୍ଜଳି ।
ଅନୁରାଗେ ଯେଣ କୃଷ୍ଣ ସଦ୍‌ଗୁଣ ଆବଳୀ । ୪ ।
ନିଷ୍କାମେ ସାଧନ ଭାବପ୍ରେମ ଯେ ଅମୂଲ୍ୟ ।
କୋଟି କୋଟି ବ୍ରହ୍ମାନନ୍ଦ ନୁହେଁ ଯାର ତୁଲ୍ୟ । ୫ ।
ଗୋପୀ ଅନୁଗତେ ରାଗ-ମାର୍ଗ ଅନୁସର ।
ଲୁବ୍ଧ ହୋ, ଗୋପାଳକୃଷ୍ଣ କହଇ ବିଚାର । ୬ ।

□□□

ଭକ୍ତଚରଣ ଦାସ

## କଂସର ଚିଟାଉ

### ( ମଥୁରାମଙ୍ଗଳ : ତୃତୀୟ ଛାନ୍ଦ )

( ରାଗ—ବଙ୍ଗଳାଶ୍ରୀ )

ଲେଖିଅଛୁ କଂସ ହୋଇ ମହାରୋଷ, ଆରେ ଗୋପପତି ନନ୍ଦ ।
ଆଜ୍ଞା ପ୍ରମାଣେ ତତକାଳେ ଆସିବୁ ନୋହିଲେ ଛେଦିବ କନ୍ଧ ॥
ଜାଣୁ ତ ମୋହର ବଳବୀର୍ଯ୍ୟ ଯେତେ, ଅରିକୁଳକୁ କେତୁ ।
ପ୍ରତିଜ୍ଞାରେ ରଣ ତେଜି ରଣରାଜ ପୁତ୍ରେହେଁ ଲଭନ୍ତି ମୃତ୍ୟୁ ॥
କୋପ କଲେ ମହୀ ଦୋହଲି ଉଠଇ, ମେରୁ ହୁଏ ଥରହର ।
ରାଣ ଦେଲେ ଜନ୍ତୁପତି ଭସ୍ମ କରେ, ଆହ୍ମମାନେ କେତେ ଛାର ॥
ବାଧାଘାତେ ଚନ୍ଦ୍ରକୂଟ କୁଧରକୁ କରିପାରଇ ମୁଁ ଚୂନା ।
ଅରିର ଉରସଲ ବାନା ବହଇ, ଶରଣେ ବଜ୍ରସେହ୍ନା ॥
ଦାନପଣକୁ ସୁନାସୀର ପରାସ୍ତେ, ଗମ୍ଭୀରପଣେ ଜଳଧି ।
ପଣ୍ଡିତପଣେ ଦେବଗୁରୁ ହାରଇ ବେଦ ବେଦାନ୍ତର ବୋଧି ॥
ଧାର୍ମିକପଣେ କେହ୍ନ ସମ ନୁହନ୍ତି, ପରଜାପାଳନେ ତାତ ।
ମୋର ଦେଶରେ ଭସ୍ମ କରି ପ୍ରଚଣ୍ଡ ହୋଇ ନ ବହଇ ବାତ ॥
ଅଗ୍ନି ଦେବତା ଶିଖାମାନ ନଉନ ଦେଖି ମୋର ତେଜ ବଳ ।
ସୁଜନ ରଖି ଦୁର୍ଜନଙ୍କୁ ମାରଇ, ଏ କଥା ମୋହର ମୂଳ ॥
ଗଡ଼ ଦେଖି ବଡ଼ କ୍ଷତ୍ରୀମାନେ ଆଡ଼ ହୁଅନ୍ତି ବହୁତ ଦୂରୁ ।
କଟକାଇ କଲେ ଅମରେ ପଳାଇ ଯାଆନ୍ତି ଅମରପୁରୁ ॥
ଯାଦବକୁଳ କୁମୁଦ-ବନ ପ୍ରାୟେ, ମୁଁ ତହିଁକି ନିଶାମଣି ।
ସୁନ୍ଦରପଣେ କାମ ସରି ନୁହଇ, ସହିବାପଣେ ଧରଣୀ ॥
ଯୁଦ୍ଧ ନ କରି ଯୋଦ୍ଧାମାନ ଜିଣିଲି ବ୍ରହ୍ମାଣ୍ଡ ହୋଇଲା ମୋର ।
ଏହିଠାରେ ଥାଇ ଦର୍ଶନେ ନ ଆସୁ ଏଡ଼େ ଗାରିମା ତୋହର ॥
ରଡ଼ି ଗୋଟାକେ ସର୍ବଜନ୍ତୁ ମରିବେ ଘନପୁରେ ଥିବେ ଯେତେ ।
ଦୟାକରି ତାଙ୍କୁ ଶରଣ ରଖିଲି ଯେଣୁ ଆଶ୍ରେ କଲେ ମୋତେ ॥

ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ସଙ୍ଗେ ଅଷ୍ଟଭୁଜ ସମସ୍ତେ ମୋହର ବଶ ।
ମହାଦୁଷ୍ଟମାନେ ଛାଡ଼ି ପଳାଇଲେ ଶୁଣି ମୋର ବୀରଘୋଷ ॥
ଛାର ଗଣ୍ଡଗୋଳ ଅଟୁ ତୁ ଏଡ଼େ ମୂଢ଼, ନ ଦେଉ ମୋହର କର ।
ଦେବ ଯେବେ ଧର୍ଯ୍ୟ ରଖିବ କେ ବାପ ? ଅନଳେ ଦହିବ ପୁର ॥
ଶ୍ୱଶୁର ଯାର ଜରାସନ୍ଧ ଦଇତ, ସଖା ଯାର ବୀର କେଶୀ ।
ଏକା ନିମିଷକେ ଚରାଚର ମଝି ପକାଇ ପାରଇ ଧ୍ୱଂସୀ ॥
ଶୂର ନାରକା ବ୍ୟୋମା, ଅଘା, ପ୍ରଲମ୍ବା, ତୃଣାବ ଦୁର୍ବନ୍ଦ ବୀର ।
ଚାଣୁର, ମୁଷ୍ଟିକ, ଶଲ୍ୟ ଆଦିମାନେ ଅଛନ୍ତି ମୋ ହନୁକାର ॥
କେବଳ ଶିଶୁପ-କୁସୁମକୁ ମହାପ୍ରଳୟ ବରଷା ଲୋଡ଼ା ।
ସେହି ପ୍ରାପ୍ୟେ ମୁହିଁ, ସେହି ପ୍ରାପ୍ୟେ ତୁହି, ଶିଶିରେ ଯେ ଯିବୁ ପଡ଼ି ॥
ଏବେ ମୋର ଧନୁ ଉତ୍ସବ ହୋଇଛି, ସମ୍ଭାର ଘେନାଇ ଆସ ।
ସମସ୍ତ ଦୋଷ ତୋର କ୍ଷମା ହୋଇଲା ମନେ ନ କରିବୁ ତ୍ରାସ ॥
ସମ୍ଭାର ଦଧି ଶତେ ଭାର ଘେନାଇ ଗୋଟିକା ଅଧାମ ଅନ୍ନ ।
ସଙ୍ଗେ ଗୋପ ଦଶପଞ୍ଚାଶ ଆଣିବୁ କରିବେ ସେ ଯାତ୍ରାବନ୍ଧ ॥
ରାମକୃଷ୍ଣ ବେନି ଭାଇଙ୍କୁ ଅକ୍ରୂର ସଙ୍ଗେ ସଙ୍ଗ କରିଦେବୁ ।
କେଡ଼େ ହେଲେଣି ତୋର ବେନି ନନ୍ଦନ ତାହାଙ୍କୁ ଆମ୍ଭେ ଦେଖିବୁ ॥
ସେହି ଦେଖିବୁ ମୋର ଧନୁ ଉତ୍ସବ, ଶୁଭ କଥା ସିନା ତୋତେ ।
ବଡ଼ଲୋକ ସଙ୍ଗେ ସଙ୍ଗ ହୋଇଯିବେ ଭୟ ନ ରହିବ ଚିତ୍ତେ ॥
ବୃଦ୍ଧ ଶରୀର, କେତେ ଦିନ ବଞ୍ଚିବୁ, ମିଥ୍ୟା ମାଟି କଳେବର ।
ତୋହ ଥାଉଁ ଥାଉଁ କୁମର ବେନିଙ୍କି ଆମ୍ଭରେ ପରଚେ କର ॥
ଶାଢ଼ୀ ବନ୍ଧାଇ ରାଜନପଣ ଦେଇ ପୂର୍ବେ ମୁହେଁ ବସିଥାଅ ।
ଆମ୍ଭର ଯେତେ ହାନି ଲାଭ ହୋଇବ କରିବେ ତୋହର ପୁଅ ॥
କଶି ପାହିଲେ ଧନୁପୂଜା ହୋଇବ, ଅଳସ ନ କର ଆସ ।
ଏମନ୍ତ ବୋଲି ଚଣ୍ଟାଉ ଲେଖିଅଛୁ ପଢ଼ି ନନ୍ଦ ହେଲେ ତୋଷ ॥
ବସୁଦେବଙ୍କରେ ହୃଦୟ ଭିତରେ କଲା ମହାଘୋର ଚିନ୍ତା ।
ଯହୁଁ ଶୁଣିଲା ମଥୁରା ଯିବେ ଦୂତ ସଙ୍ଗେ ରାମ ଶିଶୁପଣ ॥
ପରିଜନ ରାଇ ବୋଲେ ଗୋପସାଇଁ ଗୋପରେ ଘୋଷଣା ଦିଅ ।
କଶି ପାହିଲେ ମଥୁରାପୁର ଯିବେ ସମ୍ଭାର ସଜାଡ଼ି ଥାଅ ॥
ଏତେକ ଭାଷି ଅକ୍ରୂରଙ୍କୁ ଚରଣ କରଇ ବରଜରାଜା ।
ବୋଇଲେ ବଇରାଗୀ ଭକତଚରଣ ଗୋପରେ ବାଜଇ ବାଜା ॥

□□□

# ମୋ ଜୀବନ ପଛେ ନର୍କେ ପଡ଼ିଥାଉ

## ( ସ୍ତୁତିଚିନ୍ତାମଣି—ସପ୍ତବିଂଶ ବୋଲି )

ବଖାଣି ମହିମା ଧର୍ମକୁ ସ୍ଥାପିବା ଶ୍ରୀମୁଖରେ ଆଜ୍ଞା ଦେଲେ
ଦାସପଣେ କଣି ଅଧବାଟେ ଆଣି କର୍ମା ଏତେ ସର କଲେ । ୧ ।
ନାହିଁ ମୋ ଭରସା ଉଡ଼ୁଛୁ ସାହସା କି ବୁଦ୍ଧି କରିବ କହ,
ଜଗତ ସମ୍ଭାଳି ଜଗତକୁ ପାଳ ତୁମ୍ଭ ଖସି ତୁମ୍ଭେ ବହ । ୨ ।
ଭଗତଙ୍କ ଦୁଃଖ ନିରନ୍ତର ଦେଖି ଲାଗିଲଟି ପାଦାରବିନ୍ଦେ,
ବାନ୍ଧିଥା ଯୋଗାର ଆଗପଛ କରି ବହିଥାଅ ନିଜ କାନ୍ଧେ । ୩ ।
ସମ୍ପତ୍ତି, ବିପତ୍ତି, ମୁକତି, ଦୁର୍ଗତି, ଭିଆଣ କରିଛ ଯୋଡ଼ି,
ପାପ-ଦୁଃଖଭାର କେ ତୁମ୍ଭ ବୋହିବ ପାଦତଳେ ଥାଉ ପଡ଼ି । ୪ ।
ବିଜେ କରିଅଛ କର୍ମା ନବୁଝୁଛ ଚଳାଇ ପଣିବ କାହିଁ,
ଅର୍ଜି ପାପଭାର କରିବ ପସରା ପାଦ ତଳେ ଦେବି ଥୋଇ । ୫ ।
ଶରଣ ବାଞ୍ଛିତ ନାହିକାହି ଭକ୍ତ ଗଡ଼ିଗଲେଣି ସକଳ,
ଦୋଷ ଅପରାଧ କ୍ଷମାକର ଗୁରୁ ଜାଗ୍ରତରେ ପ୍ରତିପାଳ । ୬ ।
ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ । ୭ ।
ଜଣାଉଛୁ ମୁଁ ଯେ ଭକ୍ତଭାବ ରଞ୍ଜେ ଆହେ ଅଣିମା ଅନନ୍ତ,
ତିନ ବ୍ରହ୍ମାଣ୍ଡରେ ଯେତେ ଜୀବ ଜନ୍ତୁ ସମସ୍ତେ ତୁମ୍ଭ ଭଗତ । ୮ ।

× × ×

ଏକ ଖଣ୍ଡେ ହାଡ଼ ବୁନ୍ଦାଏ ରୁଧିର ଫଟ୍ଟେ ମାଉଁସ ଜାଣଇ,
ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହି ନ ପାରିବି ମୁହିଁ । ୯ ।
ଏକା ଖଡ଼ଗରେ ଦଶ ପାଞ୍ଚ ମୁଣ୍ଡ ଛିଡ଼ଇ ଭାରତ ଯୁଦ୍ଧେ,
ଆରେକ ଅଙ୍ଗକୁ ପାଦେ ପ୍ରହାରିଲେ ଏ ଅଙ୍ଗକୁ ମୋର ବାଧେ । ୧୦ ।
ଆମ୍ଭ ଭଗତରେ ଦୋଷାଦୋଷ ହେଲେ ବଜ୍ର ପଡ଼ୁ ମୋ ମୁଣ୍ଡକୁ
କହେ ଭୀମ ଭୋଇ ବ୍ରହ୍ମଶାପ ଦେଇ ଜାଳିଦିଅ ମୋ ପିଣ୍ଡକୁ । ୧୧ ।

□□□

କବିବର ରାଧାନାଥ ରାୟ

## ଶ୍ମଶାନ ଦୃଶ୍ୟ

କି ଘୋର ବୀଭତ୍ସ ଆହା ଏ ମଶାଣି-ଭୂମି !
ପରିକୀର୍ଣ୍ଣ କେଶଜାଲ ଅଙ୍ଗାରେ ଖର୍ପରେ ।
ନୀରବେ ଆସୀନ ହୋଇ ଯହିଁ ଭସ୍ମାସନେ
ଭବର ଭଙ୍ଗୁର ଲୀଳା ଦେଖଇ କୌତୁକେ
କ୍ରୂର ବିକଟାଳ କାଳ ଅସ୍ଥି-ମାଳାଧାରୀ;
ସାମ୍ୟ ଦୀକ୍ଷା ପ୍ରଚାରଇ ଏହି ପୀଠସ୍ଥଳୀ,
ସମାନ ସରବେ ଏଥି, କି ରାଜା କି ପ୍ରଜା,
କିବା ଅଟ୍ଟାଳିକାବାସୀ, କି କୁଟୀରବାସୀ,
କି ରତ୍ନପର୍ଯ୍ୟଙ୍କଶାୟୀ, କିବା ଭୂମିଶାୟୀ,
କୌଶେୟ ବସନଧାରୀ, କିବା ଚୀରଧାରୀ,
କି ସୁନ୍ଦର କି କୁତ୍ସିତ, କି ଜ୍ଞାନୀ ଅଜ୍ଞାନ
ସମଦଶା ସଭଙ୍କର, ସମ ପରିଣତି;
ଜୀବନର ସ୍ରୋତ ବହେ ସଦା ଏ ସାଗରେ,
ତରୁକୁଞ୍ଜୁ ପର୍ଣ୍ଣପୁଞ୍ଜ ଉଡ଼ାଇ ଯେସନେ
ଆଣେ ବାତ୍ୟା, ହେମନ୍ତ ନିର୍ମମ ନିୟତ
ଘଉଡ଼ାଇ ଆଣେ ଜୀବେ ଏ ମଶାଣିଭୂମେ,
କାଳର ଲଗିଛି ନାଟ ଏଥି ସବୁକାଳେ,
ମୂରତି ଏହାର କିବା ବିଭୀଷିକାମୟୀ !
ଆକାଶେ ମଣ୍ଡଳାକାରେ ମୁହୁର୍ମୁହୁଃ ଘୂରି
ପଡ଼ନ୍ତି ଗୃଧ୍ରେ ଆସି କଳକଳା ରବେ
ରକ୍ତ, ଲାଳ, କ୍ଲେଦ ତାଙ୍କ ଚଞ୍ଚୁପୁଟୁ କ୍ଷରି
ଝରଇ ଆକାଶ ଘୋଟି ବୃଷ୍ଟିଧାରା ପ୍ରାୟେ,
ଅଶିବ ପଟହ ପ୍ରାୟେ କର୍ଣ୍ଣକଟୁ ରବେ
ଉପୁଜାଇ ପ୍ରତିରାବ ଭୈରବେ ସଘନେ
ରାବନ୍ତି ଶୃଗାଳକୁଳ ଭ୍ରମି ଚଉଦିଗେ,

ଜଟିଳାଗ୍ର ଚିତାବହ୍ନି ଜଳେ ଠାବେ ଠାବେ
ପ୍ରଦୀପ୍ତ ମସ୍ତିଷ୍କ ମେଦେ, ଫୁଟାଇ ବିକଟେ
ନୃକରୋଟି, ତୀବ୍ର ଗନ୍ଧ ପ୍ରସାରି ପବନେ;
ରୁଣ୍ଡ ହୋଇ କାନ୍ଦି ଅବା କାନ୍ଦନ୍ତି ବିକଳେ
ପରେତର ପରିଜନେ, ଭାଳେ କର ମାରି,
ଛନ୍ନାଇ ଲୋତକଧାରେ ଶ୍ମଶାନ-ଅବନୀ,
ପଡ଼ିଛନ୍ତି ଠାବେ ଠାବେ ଶବ ଶ୍ରେଣି ଶ୍ରେଣି,
ବେଷ୍ଟିତ ଶ୍ୱାପଦକୁଳେ, ସଦ୍ୟୋମୃତ କେହୁ,
ଡୋଳ ହୋଇ ଫୁଲି କେହୁ ସଢ଼ଇ ମାଟିରେ,
ପ୍ରକଟାଇ ପୂତି-ଗନ୍ଧ ନାସାରନ୍ଧ୍ର ରୋଧୀ;

× × ×

ଆହା ଏହୁ ପରିଣାମ ଏ ପିଣ୍ଡର ସିନା !
ଏହୁ ସେହୁ ସୁଲକ୍ଷ୍ମକଣ୍ଠୀ, ଏହୁ ସେହୁ ଉରଃ
ଡୋରି ସୁବିଶାଳ ସ୍ୱର୍ଣ୍ଣ କପାଟ ପରିସ୍ରେ,
ଏହୁ ସେ ସୁନ୍ଦର ମୁଖ, ଚନ୍ଦ୍ରେ ଶତଦଳେ
ଘଟୁଥିଲା ପଟାନ୍ତର ଯା'ର ସ୍ୱରୂପରେ,
ଏହୁ ସେ ଅଧର, ଯା'ର ରମ୍ୟ ଅରୁଣିମା
ଗଞ୍ଜୁଥାଇ ପକ୍ୱବିମ୍ବେ, ଫୁଲ ବନ୍ଧୁଜୀବେ,
ଲୀଳାବିଳାସର ଥିଲେ ଉପାଦାନ ଯେତେ
ଏହୁମାନେ ଭଜିଛନ୍ତି ଆହା କି ବିକୃତି !
ରକ୍ତ ମେଦ ମାଂସ ଅସ୍ଥି ଲୀଳାକାରେ ଏବେ
ହସୁଛନ୍ତି ଏ ସରବେ ତ୍ରାସ ଦେଉ ଜନେ,
ବୈରାଗ୍ୟେ କରନ୍ତି ଦୃଢ଼ ଜ୍ଞାନୀଙ୍କର ମନଃ,
ଆହା, ଏହା ଦେଖି ଲୋକେ ହୁଅନ୍ତି କେସନେ
ମତ୍ତ ବିଷୟର ମଦେ ଏହୁ ଦେହ ବନ୍ଧୁ
ଏ ବୀଭତ୍ସ, ଏ ଭଙ୍ଗୁର ଦେହ ବନ୍ଧୁ ପ୍ରାଣୀ
ହୁଅନ୍ତି କେସନେ ମତ୍ତ ଆତ୍ମବଡ଼ିମାରେ ?
ଅବସାନ ହୋଇ ଏବେ ଆସିଲାଣି ଦିବା,
ଦିଗଦିଗନ୍ତରୁ ଉଡ଼ିଆସି ବିହଙ୍ଗମେ
ମୁଖର କଲେଣି ରବେ ନୀଡ଼ ଦ୍ରୁମାବଳୀ,
ଦିନ ଯାଇ ଆସେ ରାତି ନିୟତି-ଶାସନେ,

ନମ୍ବୃତ-ଶାସନେ ସିନା ପ୍ରଭାସ୍ଵୀନ ହୋଇ
ଗଗନ ପ୍ରାଙ୍ଗଣ ଧାପ, ଅନ୍ଵାସମଗାମି-
କାଳ-ଭୁଜଙ୍ଗର ଶିଖାମଣି ଧନମଣି
ବୃହ୍ନ ସାଗରଜଳେ ଲୋହିତ ବରହେ,
କାହିଁ ସେ ପ୍ରତାପ, କାହିଁ ହେନ୍ନ ଚଣ୍ଡ ଦ୍ୟୁତ ?
ଅସ୍ତମିତ ଏବେ ସବୁ ନମ୍ବୃତ-ଶାସନେ
ନମ୍ବୃତର ରଙ୍ଗଭୂମି ଏ ମଶାଣ-ସ୍ଥଳୀ;
ଖାଲି ଏ ମଶାଣ କଅାଁ ? ସେହି ସେ ନମ୍ବୃତ
କାପାଳିକ ରୂପେ ଖେଳେ ଅଖିଳ ଜଗତେ
ବଶୁଧାକ ତାର ନଳା ମଶାଣି ଅଗଣା
ରକ୍ତଗ୍ରାଶି ତହିଁ ସିନା ଏ ସନ୍ଧ୍ୟା ଲୋହିତା
ଶତାବନ୍ଧି ତା'ର ଏହି ଅସ୍ତଗାମୀ ରବି,
ନରାସ୍ଥି ଏ ତାରାମାଳା ନୃକପାଳ ଶଶୀ,
ଏ ନୈଶ ଅନ୍ଧାର ତାର ଧୂମର ପଟଳୀ,
ଅହୋ, କିବା ଭୟଙ୍କର ଶ୍ମଶାନ ଶବଶ !
ଗମ୍ଭୀର ଭୀଷଣ କେଡ଼େ ଧଶାନ୍ତ ରୌଦ୍ରଗେ ।

ooo

ଗଙ୍ଗାଧର ମେହେର

# ଉତ୍କଳଭାରତୀଙ୍କ ଉକ୍ତି

ଛନ୍ଦ ବାବୁ ମୋର      କୋମଳ ବଦନ
ଅଙ୍ଗକୁ ଯହିଁରେ ନ ହେବ ପୀଡ଼ା,
ଦେବ ଦେଲେ ଦିଅ      ଏମନ୍ତ ଭୂଷଣ
ଯାହା ସେନ ମୋର ନ ହେବ ବ୍ରୀଡ଼ା ।
ଅଙ୍ଗ ଗୁହିଁ ଦିଅ      ଯୋଗ୍ୟ ପରିଛଦ
ପରିଛଦ ଯୋଗୁଁ ନ କାଟ ଦେହ,
କଷ୍ଟ ହେଲେ ହେବ      ଜୀବନେ ବିପଦ
ନ କର ମାତାକୁ ସେପରି ସ୍ନେହ ।

ନଖ ବଢ଼ିଥିଲେ କର କରତନ
ରଞ୍ଜିଦିଅ ତହିଁ ଅଲତା ରଙ୍ଗ,
ନାକ ବଡ଼ ଥିଲେ ତା କଲେ ଛେଦନ
ହେବ ନାହିଁ କି ମୋ ସୌଷ୍ଠବ ଭଙ୍ଗ ?

ରୋଗ ଦେହେ ଥିଲେ ପ୍ରତିକାର କର
ପ୍ରକୃତିସ୍ଥ ହେଉ ଜୀବନ ମୋର,
ଭିନ୍ନବର୍ଣ୍ଣେ ଯଦି ରଞ୍ଜ କଳେବର
ହେବ ମାତ୍ର ତହିଁ ବୀଭତ୍ସ ଘୋର ।

ତୁମେ ମୋତେ ଯେଉଁ ବେଶରେ ସାଜିବ
ସେ ବେଶେ ସାଜିବେ ଜଗତଜନେ,
ତୁମେ ମୋତେ ଯଦି ଯତନେ ମାଜିବ
ମାର୍ଜିତ ଉଜ୍ଜ୍ୱଳ ହେବ ଭୁବନେ ।

ଦେଉ ଦେଉ ମୋର ନୟନେ ଅଞ୍ଜନ
ମୁଖ ଯଦି ହେବ କାଳିମାମୟ,
ପୋଛ ଗଣ୍ଡ କାଳି ନ ଦେଇ ଅଞ୍ଜନ
ହେବ ମନୋହର କାନ୍ତି ଉଦୟ ।

ପାଇଥିଲେ ଦିଅ ବଳିତ ପ୍ରସୂନ
ଥାଏ ଯଦି ତହିଁ କିଛି ସୌରଭ,
ସୌରଭ ନ ଥିଲେ କାନ୍ତିରେ ନୂତନ
ନ ଥିଲେ, ବଢ଼ିବ ସିନା ଗୌରବ ।

ମସ୍ତକେ ମୋ ଝୋପି ନ ଦେବ ବାବାରେ
ନ କାଢ଼ିବ ମୋର କରୁ କଙ୍କଣ,
ସିନ୍ଦୂରବିନ୍ଦୁ ମୋ ଭାଲେ ରଖିବାରେ
ନିରନ୍ତର ମନେ ଥିବ ସ୍ମରଣ ।

ଭାଇ ଭାଇ ମଧ୍ୟେ କଳହ ନ କର
ତୁମ୍ଭ କଳହେ ମୁଁ ହେବି ଦୂଷିତ,
ରତନ ହାରହେ ହୁଅ ଯତ୍ନପର
ରହି ମୁକ୍ତି ମୋତେ କର ଭୂଷିତ ।

ଅଭିମାନ ରୋଷେ ନ କର ପ୍ରଳାପ
ପ୍ରଳାପ ଶୁଣିଲେ କାନ୍ଦେ ମୋ ହୃଦ,
ଜ୍ଞାନେ ଧ୍ୟାନ ରଖ କର ସଦାଲାପ
ସଦାଲାପେ ସଦା ବଢୁ ମୋ ମୁଦ ।

ମନ୍ଦିରକୁ ମୋର କର ସୁସଜ୍ଜିତ
ରମ୍ୟ ରମ୍ୟ ଉପକରଣ ଆଣି,
କାଠ ହର୍ମ୍ୟମାନ କର ସୁସଜ୍ଜିତ
ଢାଳନ୍ତ ତହିଁ ସୁବର୍ଣ୍ଣପାଣି ।

ନାନା ଦେଶୁଁ ଆଣି ତରୁବଲ୍ଲୀମାନ
ରୋପଣ କର ମୋ ଉଦ୍ୟାନ ଗର୍ଭେ,
ଉଦ୍ୟାନ କରିବ ସୁଫଳ ପ୍ରଦାନେ
ଭୁଞ୍ଜିବ ସୁଖେ ମୋ ନନ୍ଦନ ସର୍ବେ ।

ଆବର୍ଜ୍ଜନାହୀନ କର ମୋ ସଦନ
କର ଆବଶ୍ୟକ ଜୀର୍ଣ୍ଣ ସଂସ୍କାର,
ମାନ୍ୟ ଧର୍ମ ରଖି କର ବିଚରଣ
ନ କର ମୋ ପୁରେ ଯଥେଚ୍ଛାଚାର ।

ନିଜ ଉନ୍ନତିକି ଉନ୍ନତି ନ ମଣ
ମୋତେ ନ କରିବା ଯାଏ ଉନ୍ନତ,
ଏକ ତରୁ ତଳେ ଥିବେ କେତେ ଜଣ
ବନ୍ଧୁ ଜଳ, ଫଳ ହୁଏ ପବିତ ।

ରୁଦ୍ଧ ରାଜ୍ୟ ଭୂମି ପ୍ଲାବି ନ ପାରନ୍ତୁ
ଆଣ୍ଡିସ୍ ଗିରିର ଅସଂଖ୍ୟ ଝର,
କେ ହରିବ ରୁଦ୍ଧ ହୃଦସ୍ଥ ତପତ
ନ ବହିଲେ ପୂତ ସ୍ରୋତ ମୋହର ?

ହୋଇ ଏକପ୍ରାଣ ହୋଇ ଏକମନ
ଉଚ୍ଚତାନେ ଗାଅ "ଭାରତୀ ଜୟ"
ଉଡେ ଟେକ କୀର୍ତ୍ତି- ପତାକା ଗଗନ
ହୋଇଯାଉ ଶୁଭ୍ର ପତାକାମୟ ।

□□□

ଭକ୍ତକବି ମଧୁସୂଦନ ରାଓ

## ଶଙ୍ଖଧ୍ୱନି

( ୧ )

ପଶ୍ଚିମର ଚକ୍ରବାଳେ ବୁଡ଼ଇ ଭାସ୍କର,
ପ୍ରଶାନ୍ତ ଦିନାନ୍ତ-ଚ୍ଛାୟା ଆବୋରେ ଅମ୍ବର ।
ନିଃଶବ୍ଦେ ଗମ୍ଭୀରେ ଧୀରେ ସନ୍ଧ୍ୟା ଶାନ୍ତିମୟୀ
ଶାନ୍ତ ମହୀଶିରେ ଶାନ୍ତିବାରି ବରଷଇ ।
ଦିବା ଅବସାନେ ଶାନ୍ତ ମୁହିଁ ପାନ୍ଥଜନ
ଗୃହ ଧ୍ୟାନେ ଗୃହମୁଖେ ଚଞ୍ଚଳ ଚରଣ ।
ସହସା ସୁଦୂର ଗ୍ରାମେ ବାଜେ ଶଙ୍ଖଧ୍ୱନି,
ସ୍ତମ୍ଭିତ ସେ ନାଦେ ଯେହ୍ନେ ନିଖିଳ ଅବନୀ ।
କ୍ଷଣେ କର୍ଣ୍ଣେ ଭେଦି ଆହା ସେ ସ୍ୱରଲହରୀ
ଶୁଣିଲି ମୁଁ ଆଚମ୍ବିତେ ସ୍ୱପ୍ନାବିଷ୍ଟ ପରି ।
ତହୁଁ ମହା ଜାଗରଣେ ଜାଗିଲା ମୋ ପ୍ରାଣ,
ଶୁଣିଲି ସେ ଧ୍ୱନି ମଧ୍ୟେ ମହାସିନ୍ଧୁ-ତାନ
ଅନନ୍ତ ଅର୍ଣ୍ଣବ ଧ୍ୱନି ମହାମହୋଦାର
ଅର୍ଣ୍ଣବ-ସମ୍ଭବ ଶଙ୍ଖେ କରୁଛି ବିହାର ।

( ୨ )

ମହା-ଅର୍ଣ୍ଣବର ଆହା-ପ୍ରଣବ ଝଙ୍କାର
ମନ୍ଦ୍ରନାଦେ ଶଙ୍ଖ ଆହା ଘୋଷେ ଅନିବାର ।
'ଅନନ୍ତ ଅପାର ସିନ୍ଧୁ ମୋର ମହାଲୟ
ମୋ ଅନ୍ତର ଅନନ୍ତର ନାଦେ ନାଦମୟ,
ସେ ଅମୃତ ଆଳୟରୁ ହୋଇ ଅନ୍ତଗତ
ଭୁଲିବି କି ମୋହେ ତା'ର ଅମୃତ ସଙ୍ଗୀତ ?

କ୍ଷୁଦ୍ରାଦପି କ୍ଷୁଦ୍ରତର ମର୍ତ୍ତ୍ୟ ତୃଣ ପାଇଁ
ଅବିଦ୍ୟା-ପ୍ରମାଦେ ପାଞ୍ଚ ହେଲ କି ହେ ବାଇ ?
କେମନ୍ତେ ହେ ପାସୋରିଲ ଜନ୍ମଭୂମି କଥା
କାହିଁକି ଭୁଲ ରସନାରେ ଅମୃତ ବାରତା ?
ଆସ ଆସ ସୁଗମ୍ଭୀର ମହାବେଦ-ତାନେ
ଜଗତେ ଜଗାଅ ସବ ଅନନ୍ତ ସନ୍ତାନେ ।
ଅନନ୍ତେ ଜୀବନ-ସ୍ଫୂର୍ତ୍ତି, ଅନନ୍ତେ ଅଭୟ;
ମର୍ତ୍ତ୍ୟ-ପ୍ରବାହରେ ଗାଅ ଅମୃତର ଜୟ ।

□□□

ପଲ୍ଲୀକବି ନନ୍ଦକିଶୋର ବଳ

## ବିଚ୍ଛେଦେ

ମେଘ ବରଷଇ ବିଜୁଳି ମାରଇ
ବାଆ ବହେ ସୁଲୁ ସୁଲୁ,
ଘୋର ଅନ୍ଧାରରେ ବରଷାର ନୀର
ଝରୁଥାଏ ଝୁରୁଝୁରୁ ।
ପଡ଼ି ଧରାତଳ ଗଡ଼ିଯାଏ ଜଳ
ନାଳେ ନାଳେ କୁଳୁକୁଳୁ,
ତରୁ ଡାଳେ ଡାଳେ ଉଡ଼ି ମାଳେମାଳେ
ଜୋନାକିଏ ଜୁଳୁଜୁଳୁ ।
ଜଳବିନ୍ଦୁ ଦଳେ ତରୁଲତା ତଳେ
ପଡ଼ନ୍ତି ଟପଟପ ସ୍ୱନ,
ଅଳପବୟସୀ ଦୂର ପରବାସୀ
ଶୁଣନ୍ତେ ଉଦାସ ମନ ।
କେଉଁ ଦୋଷେ ଦୋଷୀ ହେଲେ ପରବାସୀ
କରନ୍ତି ବିଧାତା ଜନେ;

ଏହା ମନେ କରି ଦୁଃଖୀ ନରନାରୀ
ବିଧି କାନ୍ଦେ ମନେ ମନେ ।
କବି କହେ ଧାତ୍ରୀ, ଶୁଣ ଶୁଣ ସଇ
ବିଧିକି ନ ନିନ୍ଦ ଗ୍ରନ୍ଥେ,
ନୁହ ତରତର ସୁଧୀରେ ବିଚାର
ବିଧିଲୀଳା ବିଶ୍ୱଦାଣ୍ଡେ ।
ବିଚ୍ଛେଦ ମିଳନ ସୋଦର ସମାନ
ଏକ ପାଖେ ଥାଏ ଆନ,
ଅଭିନ୍ନ ଅନ୍ତର ବିବାଦ ତାଙ୍କର
ବିଚିତ୍ର ବିଧି ବିଧାନ ।
ମିଳନେ ଜନ୍ମଇ ବିଚ୍ଛେଦେ ବଢ଼ଇ
ପ୍ରୀତିର ଏହି ଲକ୍ଷଣ,
ପୀରତି କନକ ଦିଶେ ଜକଜକ
ବିରହ-ବହ୍ନି-କଷଣ ।
ପ୍ରଥମ ଦର୍ଶନେ ଜାତ ହୁଏ ମନେ
ଅପୂର୍ବ ପ୍ରୀତି ଅଙ୍କୁର,
ସୃଶଚକ୍ଷୁ କୋଣେ ମଧୁର ମିଳନେ
ପିଏ ସେ ରସ ମଧୁର ।
କାଲେ ସେ ଉଭାଏ କେଣେ ଚାଲିଯାଏ,
ମିଳନ ଅନ୍ତେ ବିରହ,
କବି ପଚାରଇ ଏହି କାଣ୍ଡ ସଇ,
କେଉଁଠି ନହୁଏ କହ ?
ସତୀ ଦମୟନ୍ତୀ ଜାନକୀ ପାର୍ବତୀ
ଶକୁନ୍ତଳା ଆଦି ଯେତେ,
ବିଚ୍ଛେଦେ ମିଳନ ଜଗତ-ଜୀବନ
ବର୍ଣ୍ଣିବି ମୁଁ ଆଉ କେତେ ?
ଗୋପପୁରବାସ ମଥୁରା ପ୍ରବାସ
ପ୍ରଭାସ-ମିଳନ-ଲୀଳା,
ଅଯୋଧ୍ୟା-ଜୀବନ ଲଙ୍କା-ଅପମାନ
ଅନ୍ତେ ଅଭିଷେକ ଖେଳା ।

ଏହୁ ପ୍ରୀତି ରୀତି, ଯୁଗ ଯାଏ ବିତି,
ଯାଆଁଳା ଭାଇ ସେ ଦୁହେଁ
ବିଚ୍ଛେଦ-ମିଳନ ବିଧାତାନନ୍ଦନ
ଖେଳ ଖେଳ କବି କହେ ।

କୁନ୍ତଳାକୁମାରୀ ସାବତ

## ଅଭିଶପ୍ତର ଅଭିମାନ

ଜାଣେ ଏ ଜୀବନ କେବେଁ ନ ହେବ ବିଫଳ,
ଅକାରଣ ନୁହେଁ ମୋର ଉଷ୍ଣ ଅଶ୍ରୁଜଳ
ନିବିଡ଼ ନିଷ୍ଠୁର ଘନ ଗହନ ଅନ୍ଧାରେ
ନ ମରିବ ଚିରଦିନ ତୀବ୍ର ହାହାକାରେ ।
ଅମୀୟ ଅରୁଣ ଭାତି
ବିନାଶିବ ଚିର ରାତି,
ଅମୃତ ଆନନ୍ଦେ ମୁହିଁ ଅନନ୍ତ ଜୀବନେ
ଜାଗିବି ଜାଗିବି, ଦୀପ୍ତ ଆଶା ମୋର ମନେ ।

ଦୁର୍ବଳ କୋମଳ ମୁହିଁ ମଳିନ ଅଧମ
କୋଟି କର୍ତ୍ତବ୍ୟ ପାଳନେ ସତତ ଅକ୍ଷମ
ଶତ ଶତ ଭୁଲ ଭ୍ରାନ୍ତି,
ଦାରୁଣ ଦୂଷଣ ଶ୍ରାନ୍ତି,
ଘେରିଛି ଜୀବନ ମୋର ସହସ୍ର ଜଞ୍ଜାଳ,
ତଥାପି ନୁହେଁ ମୁଁ ସଖା ମୃତ୍ତିକା କଙ୍କାଳ ।
ଅମୃତ ସନ୍ତାନ ମୁହିଁ ସୁଧା-ଅଧିକାରୀ,
ଅନନ୍ତ ତିମିର ତଳେ ଦୀପ୍ତ ଦୀପଧାରୀ ।
ଲାଞ୍ଛନା ଗଞ୍ଜନା ଶତ ଭର୍ତ୍ସନା ଜୀବନେ,
ପଦେ ପଦେ ଅପମାନ ପୀଡ଼ଇ ମରମେ,

ତୀକ୍ଷ୍ଣ ଶେଳ ଶିଳା ଅବା କଠିନ କୃପାଣ-
ପ୍ରହାରେ ଜର୍ଜର ହୁଅ, ଜୀବନ ମୋ ବପ,
ତଥାପି ଅମର ମୁହିଁ ମାନବସନ୍ତାନ,
ବ୍ୟଥେ ଏ ପୃଥିବୀ ମୋତେ ନ କଲା ଆହ୍ୱାନ ।
ତିଳେ ତିଳେ ଏ ଜୀବନ
କରିଅଛି ନିବେଦନ,
ଯାର ସୃଷ୍ଟି ଯାର ମୁହିଁ ପ୍ରଚ୍ଛନ୍ନ ଦେବତା,
କରମକରତା ମୁହିଁ ମୋ ଭାଗ୍ୟନିୟନ୍ତା ।

କରୁଛ କି ପରିହାସ ଦେଖି ଦୀନବେଶ,
ଅର୍ଦ୍ଧ-ଅନଶନେ କ୍ଷୁଦ୍ର କୁଟୀରେ ମୋ କ୍ଲେଶ ?
ତପତ ତପନ ତଳେ ସିକ୍ତ ସ୍ୱେଦଜଳେ
ରୁକ୍ଷ ବକ୍ଷଧାରି ମୁହିଁ ଚଷଇ ଲଙ୍ଗଳେ;
ଅବା ଭିକ୍ଷାପାତ୍ର ଧରି,
ସରମେ ମରମେ ସରି,
ତବ ରମ୍ୟ ହର୍ମ୍ୟ ତୋରା ତୋରଣ ସମ୍ମୁଖେ
କ୍ଲାନ୍ତ ପଦକ୍ଷେପେ ଆସେ, ନ ଚାହୁଁଛ ମୁଖେ ।

ଲାଜେ ପୋତି ମଥା ଦୂରେ ଯାଅ ମୋର ଭାଇ,
ନ ଚିହ୍ନ ନ ଚିହ୍ନ ମୋତେ ନ ହେବ ବଥାଇ ।
ତିଳେ ତିଳେ ପ୍ରାଣ ମୋର କରିବି ଅର୍ପଣ
ତବ ଶତ ସୁଖ ଯହିଁ ହେଉଛି ବର୍ଦ୍ଧନ ।
ବଞ୍ଚିବାର ଅଧିକାର ରଖ ଚିରଦିନ,
ମରଣେ ସମ୍ବଳ କରି ହେଉଥାଏ କ୍ଷୀଣ ।
ତଥାପି ମରିବି ନାହିଁ
ମନେରଖ ଏହା ଭାଇ,
ଅକାରଣେ ଜନ୍ମ ମୋର ନ ହେଲା ଭୂତଳେ;
ଅନନ୍ତ ବିନାଶ ଘେନ ମରିବି ବିରଳେ ।

ଅନନ୍ତ ବିକାଶ ମମ
ଚିରନ୍ତନ ଅନୁପମ,
କଷଣ-କର୍ଦ୍ଦମେ ପଦ୍ମ ମୁହିଁ ଶତଦଳ,
ନ ଛୁଇବ ବିଫଳ ମୋର ତପ୍ତ ନେତ୍ରଜଳ ।
ପାଷାଣେ ପିନ୍ଧିଛ ଭାଗ୍ୟ ବନ୍ଧୁରିଛ ସଖା,
ପାଷାଣ ପ୍ରାଣରେ ତେଣୁ ନ ପଶଇ ଦୟା ।
ଉଚ୍ଚାସନେ ସ୍ୱଚ୍ଛ ମନେ ଆରାମ ଶୟନେ
ହରୁଛ ଦିବସ ନିଶି, କାନ୍ଦେ ମୁଁ ଅୟନେ ।
ମୋ ରକ୍ତ ତପତ ଧାରେ,
ମୋର କ୍ରୂର ହାହାକାରେ
ବୃଦ୍ଧିରହିଅଛି ତବ ଜୀବନ ସମ୍ପଦ;
ନ ମିଳେ ମୁକତି ମୋତେ ଧାୟିଣ ଶ୍ରୀପଦ ।

ତୁମେ ବୀର, ତୁମେ ଗୁଣୀ;
ମୁଁ ହୀନ ଅଜ୍ଞାନ ଋଣୀ ।
ତୁମର ସଭ୍ୟତା ପାଶେ ତୁମର ଆଲୋକେ;
ତୁମ ବିନା ବାସ ମୋର ଅନନ୍ତ ନରକେ ।
ନ ଭାବ ନ ଭାବ ଭାଇ,
କେହି କେବେ ଶୁଦ୍ର ନାହିଁ;
ନିଷ୍ଠୁର ପୀଡ଼ନ ଦାଉ ଦେ'ଣା ଗୋଟି ଗୋଟି ।
ଥାଅ ସୁଖେ; ଭୋଗେ ମୁହିଁ କଷ୍ଟ କୋଟି କୋଟି ।

× × ×

ଅକାରଣେ କ୍ରୌଞ୍ଚ ପକ୍ଷୀ ନ ତେଜିବ ଜୀବ;
ରାମାୟଣ-ସୁଧା ପରି ପୃଥିବୀ ପିଇବ;
କବିକୁଳଗୁରୁ ହେବେ ଚୋର ରତ୍ନାକର;
ବୋଲାଇବେ ବାଲମୀକି ମହର୍ଷିପ୍ରବର;
ଅକାରଣେ ବନବାସେ ନ ଯିବ ଜାନକୀ,
ସତୀତ୍ୱ ଗୌରବ ପରି ଉଠିବ ମସ୍ତକ ।
ପାଇ ପୂର୍ଣ୍ଣ ଅଧିକାର
ରଘୁନାଥ ନେତ୍ରଧାର,

ପୋଛି ଲବଂକୁଶ ଯୁଗ ଧନ୍ୟ ହେବେ ଭବେ,
ଅକାରଣେ ବୈଦେହୀ ଶୋକ ନ କଲି ବୈଧବ୍ୟେ ।

× × /

ଆଜ ଆଉ ଆମ ଭୂଜେ ଦଳୁଛଁ ଦରପେ,
ଅସହାୟ, ଦୀନ, ଭସ୍ମେ ପତ୍ତିଣ ଅରପେ;
ଚରଦିନ ସମତୁଲ ନ ଥିବ ତୁମର,
କେବେ ତୁମେ ତଳେ, କେବେ ହେବି ମୁଁ ଉପର;
ତୁମର କପାଟ ମୋର ହେବ ଶିରଶୋଭା,
ମୋହର ମୋହିନୀ ଦନେ ହେବ ମନଲୋଭା ।
ଆଜ ଯା'ରେ ପଦାଘାତ
କାଲି ତା'ର ଧର ହାତ
ଆଦରେ ଅଞ୍ଚଳନିଧି ଅଙ୍କ ଆସନରେ
ରଖିବ ରତନ ସମ ସ୍ନେହ ଯତନରେ ।

ବଳ ! ପଦଦଳା ତବ ସହିବ ନୀରବେ,
ଗୋଟିଏ କଥା ମୋ ମୁଖେ ନ ଶୁଣିବ ଭବେ;
ତଥାପି ନିଃଶ୍ୱାସ ମୋର ଫଟାଇ ପାଷାଣ
କରିବ ବ୍ୟଥିତ ତବ ଅହଙ୍କାରୀ ପ୍ରାଣ ।
ଆଜ ଯା'କୁ ତୃଣସମ କର ତୁଚ୍ଛ ହେୟ,
ଆଜ ଯେ ତୁମର ବନ୍ଦୀ କଠିନ ଶୃଙ୍ଖଳେ,
କାଲି ପୂଜାଫୁଲ ହେବ ତା'ର ପାଦତଳେ ।
ଆଜ ତୁମେ ଯା'ର ରାହୁ
କାଲି ତବ ପ୍ରେମବାହୁ
କରି ଆଲିଙ୍ଗନ ତାକୁ ଦେବ ଦେବାସନ
ତା'ଗୁଣେ ମୋହିବ ତମ ମୂଢ଼ ଅନ୍ଧ ମନ ।

ଅସ୍ପୃଶ୍ୟ ଇତର ମୁହିଁ ଘୃଣିତ ଚଣ୍ଡାଳ
କରେ ପରିଷ୍କାର ତବ ନରକ ଜଞ୍ଜାଳ;
କାନ୍ଧେ ବହିନିଏ ବୋଲି ପ୍ରଖର ଖରାରେ
'ବେହେରା', 'ବେହେରା' ଡାକ ଶୁଣାଅ ଶ୍ରଦ୍ଧାରେ ।

ମୁହିଁ ପଦସେବାକାଂକ୍ଷୀ
ଭୃତ୍ୟ, ପୂଜ୍ୟାର୍ଥୀ, ଭିକାରି
ବୋଲିଉଛ ବାବୁ ବସି ଉଚ୍ଚ ଆସନରେ
ଲଜ ଲୁଚୁଅ କିନ୍ତୁ ମୋ ଦଣ୍ଡ ବସନରେ;
ମୋ ଦଣ୍ଡ ଅଶନ ପୁଣି ନସୁଛ ଭୋଜନ
ତୁଙ୍ଗ ପ୍ରାସାଦରେ ତୁମେ, ତଳେ ମୋ ରୋଦନ ।
× × ×
ଭଲ ମୋ ମୂର୍ଖତା ସୁଖେ ଦଅ କରତାଳି,
ମରେ ମୁଁ ଦରିଦ୍ର କ୍ଷୋଭେ ଡେଙ୍ଗେ ଚଟା ଜାଳି;
ନାହିଁ ମୋର ବାସ, ଅଛୁ ମହାକାଶତଳେ;
ନାହିଁ ମୋର ହେମଶଯ୍ୟା ଶୁଏ ମୁଁ ଭୂତଳେ,
ଶୀତ ଖର ବରଷାରେ
ପ୍ରକୃତିର ଅତ୍ୟାଚାରେ
କ୍ଷୀଣ ଅଙ୍ଗଶିରା ସବୁ ଆସୁ ଯାଏ ହରି,
ତଥାପି ବଞ୍ଚିବ ନିଷ୍ଠେ ଏ ଜଣଣେ ମରି ।
ମରଣ ନୁହେଁ ମୋ କ୍ଲେଶ
ନୁହେଁ ତା ବିନାଶ, ଶେଷ,
ଅଜ୍ଞାତ ସୁନ୍ଦର ନବଜୀବନ ଆରମ୍ଭ
ମୋ ମରଣେ କିନ୍ତୁ ତବ ଜୀବ କି ସମ୍ଭବ ?
ସମ୍ବଳହୀନର ଶେଷ ଆଶାର ସମ୍ବଳ
କାଢ଼ିନେଲେ ଶୀତେ ଯଥା ଶୀତାର୍ତ୍ତ କମ୍ବଳ;
ଭାବିଲ ମହତ ଏକ କରମ ସାଧିଲ
ବୈରଭାବେ ହୀନ ଅରି ଜୀବନ ବଧିଲ ।
କିନ୍ତୁ 'ରକ୍ତବୀଜ' କେବେ ମରେ ସେ ନମରେ ।
ଶତ ଶତ ଦୈତ୍ୟ ଜାତ ବିନ୍ଦୁ ଏ ରକ୍ତରେ ।
ଖଡ୍ଗହସ୍ତେ ହାଣି ଶିର
ବୁହାଇଲ ଯେ ରୁଧିର,
ବିନ୍ଦୁ ସିନ୍ଧୁ ହୋଇ ଶେଷେ ବୁଡ଼ିବ ଆପଣ
ଲଭିବ ତ ପ୍ରତିଫଳ କୃପାରେ କୃପାଣ ।
× × ×

□□□

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

## ଚିର-ଶିଖେ ଲକ୍ଷ୍ୟ ରଖି ଚାଲିବ ମୁକର

ଯେତେ ଦୂର ଯାଏ ଚାହିଁ
ଚଉପାଶେ ଖାଲି ବାଲି,
ନାହିଁ କାହିଁ ଶ୍ୟାମଶସ୍ୟ ନବ ଦୂର୍ବାଦଳ,
ନାହିଁ ଲତା, ନାହିଁ ତରୁ,
କେବଳ ଭୀଷଣ ମରୁ,
ଦିଶେ ନାହିଁ କାହିଁ ଜଳ ଫୁଲ ଅବା ଫଳ ।
ସୁନୀଳ ସୁନ୍ଦର ଗିରି
ଧରି ଅନୁପମ ଶିରୀ
ଦିଶୁଥିଲା ଅଳ୍ପ ଦୂରେ ଚକ୍ରବାଳ ମୂଳେ,
ଉଜ୍ଜ୍ୱଳ ତାରକାଶ୍ରେଣି
ଦିବ୍ୟ ଆଲୋକେ ବିଭାସି
ନିରନ୍ତର ଶୋଭୁଥିଲା ତାର ଶୃଙ୍ଗ ଚୂଳେ ।
ଭ୍ରମଣ ପ୍ରଥମ କ୍ଷଣେ
ଭାବି ନ ଥିଲି ମୁଁ ମନେ
ହେବ ବୋଲି ଏତେ ଦୂର ଏ ବିଷମ ପଥ,
କ୍ରମେ ବଢ଼ିଯାଏ କାଳ
କ୍ରମେ ଘୂଞ୍ଚେ ଚକ୍ରବାଳ
ଶିଥିଳ ହୈକତେ ଚଳେ ମୋର ମନୋରଥ ।
ଆଉ କେତେ ଦିନ ଅନ୍ତେ
ଏ ଦୁସ୍ତର ବାଲିବନ୍ତେ
ନ ଚଳି ରହିବ ପାଦ ସିନା ଥକାମାରି
ନ ଦେଖିବ ଜନ ଆଖି,
ଘୋର ପନ୍ଥାରେ ଏକାକୀ
ଚାଲିଯିବ ଯତେ ପ୍ରାଣ ବୃଥା ଧାରି ଧାରି ।
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ହେଲେ ହେଉ ଯେତେ ଦୂର ଏ ଦୁର୍ଗମ ପଥ,

କହ କେଉଁ ମୂଢ଼ ଜନ
କରି ଥରେ ବିଲୋକନ
ଏ ଅପୂର୍ବ ଦିବ୍ୟ ଦୃଶ୍ୟ ରହିବ ବିରତ ?
ଅବସନ୍ନ ହେଲେ କାୟା
ଆଶ୍ରିବ ଏ ଗିରିଛାୟା,
ବାଲିଶେଯେ ଶୋଇବଇଁ ଯାଇ ଅଧେ ବାଟ,
ତାରକିତ ଗିରି-ଚୂଡ଼େ
ନିରେଖି ନୟନ ଦୃଢ଼େ
ଫେଡ଼ିବ ପରମ ସୁଖେ ହୃଦୟ-କବାଟ ।
ସୁଦୂର ସାଗର-ଗୀତ
ଶ୍ରବଣେ ସ୍ୱର୍ଗୀୟ ପ୍ରୀତ
ଲଭିଣ ମୋ ପ୍ରାଣ-ପକ୍ଷୀ ଉଡ଼ିଯିବ ଧୀରେ,
ଅନୁସରି ସେହି ଗାନ
କରି ମନେ ଏକ ଧ୍ୟାନ
ଅବଶେଷେ ବସିବ ସେ ଗିରି ଉଚ୍ଚ ଶିରେ ।
ଦେଖି ଚନ୍ଦ୍ର-ଗୁରୁ ଅଙ୍ଗ
ଲଭିବାକୁ ତାର ସଙ୍ଗ
ଧାଇଁ ଧାଇଁ ପଥେ ଶଶୀ ଛାଡ଼ିଲା ପରାଣ,
କେତେ ଦୂରେ ନିଶାପତି
କାନ୍ଦିବା ଶଶକ ଗତି
ପାଇଲା ସେ ଅନ୍ତେ ପରା ସେହି ବକ୍ଷେ ସ୍ଥାନ !
ଶତ ଶଶୀ ବଳି ଶୋଭା
କି ବିଚିତ୍ର ମନୋଲୋଭା,
କିପରି ଏହାର ଆଶା ଛାଡ଼ିବି ମୁଁ ନର,
ଗଲେ ପଛେ ଯାଉ ଜୀବ
ଯାହା ହେବ ଦେଖାଯିବ
ଗିରି-ଶିଖେ ଲକ୍ଷ୍ୟ ରଖି ଗୁଞ୍ଜିବ ମୂକର ।

ନୀଳକଣ୍ଠ ଦାସ

# 'ଆହ୍ବାରେ ଦଇବ'…*

ଆହ୍ୱାରେ ଦଇବ ଙ୍କ କଲୁ ରୁ ସତେ
ଘର ବୋଲିବାକୁ ନଫିଟେ ସ୍ୱର,
ଏ ନୀଳ ବିପିନ ଶ୍ୟାମଳ କେଦାରେ
କେତେ ପୁରପଲ୍ଲୀ ହେଉଛୁ ଦୂର !
ଅନାହାରେ ମରେ କୃଷକ ମଉନେ
କିଏ ଜାଣୁଛୁ ତା ବେଦନା ଢଳେ !
ରାଜ-ଜନ ବୋଲି ବଂଚକ ତସ୍କର
ବୁଲୁଛନ୍ତି ଗ୍ରାମ ବିପିନ ବଲେ,
ଯାଅ ମହାନଦୀ ବନ୍ଧ ପାରିବାରେ
ଉଦ୍ଧେ ଚୁମ୍ବି ପଦେ ସେ ରାଜପୁର,
ବିଦେଶୀ ତସ୍କର ଦସ୍ୟୁ ପଦାଘାତେ
ଟ୍ରସାର ଉତ୍କଳ ଜନନୀ ଉର ।
ଜନନୀ ଜନନୀ ବୋଲୁଥିଲି ତୋରେ
ରଖି ନପାରିଲି ଗାରିମା ତବ,
ଶତ-ନଦୀ-ଧାରେ ଲୋତକର ଧାର
ଦେଖି ଯାଉଅଛୁ ଗୁଡ଼ି ଏ ଭବ ।
ଶ୍ୟାମଳ କାନନେ ଖେଳାଇଲୁ ମାତ,
ବଢ଼ାଇଲୁ ଦେଇ ଜୀବନ ପଯ୍ୟ,
ହେଲି ତୋ ସମ୍ପଦ ତୋହର ଭଗାର
ଫଡାନେ ଘୋଟିଲି ତସ୍କର ଭୟ ।
ଜନମ-ଭୂଇଁ ତୁ ଜନନୀ ମୋହର
ଜୀବନେ କେସନେ ଭୁଲିବି ତୋତେ ?
ଯାଉଛୁ ବରଜ ଦିଅ ମା' ବିଦାୟ
ଅଳଝଲ ମୋର ସହିଛୁ କେତେ ।

* 'ମାୟାଦେବୀ'ର ଏକାଂଶ

ତୋହର ହୃଦୟ ଚର ମୁ ଖୋଇଛୁ
ପିଇଛୁ ତୋହର ଜୀବନ-ଧାର,
ତେବେହେଁ ହୃଦୟେ ରଖିବୁ ଆଦର
ମରଣେ ଏ ମୋର ଶରୀର ଭର ।
ସ୍ୱଦେଶ ତ ମୁହିଁ ଯାଇ ନାହିଁ କେବେ
କେମନ୍ତେ ଜାଣିବ ବିରହ ଖେଦ,
କ୍ଷଣେ ଦୂର କେବେ ପାଶୁଧରେ ଗଲେ
ଭୁଲି ନ ପାରଇ ତୋର ସଂପଦ ।
ଚିର ଲାଗି ଏବେ ଯାଉଅଛୁ ମୁହିଁ
ଯେ ଦେଶେ, ସେ ଦେଶୁ ଫେରନ୍ତି ନାହିଁ,
ନରକେ କି ନିଭେ ସ୍ୱରଗେ କି ଭଲେ
କେମନ୍ତେ ସେ କଥା ଜାଣିବ ମୁହିଁ ?
ତୋତେ ଛାଡ଼ି କେଉଁ ସ୍ୱରଗେ ରହିବି
ଅନନ୍ତ-ବିରହ-ଅନଳେ-ଜଳି ?
ନାହିଁ କି ନରକ ଏ ବନେ କୁମାର ?
'ଦିଅ ମୋତେ ସେହି ନରକେ ପେଲି ।'

ପଣ୍ଡିତ ଗୋଦାବରୀଶ ମିଶ୍ର

## ଶୂନ୍ୟମନେ

ଶୂନ୍ୟମନେ ତରୁତଳେ ବସିଛି ମୁଁ ଏକା,
କେତେ କିଏ ଆସି ବାରେ ଦେଇଯାନ୍ତି ଦେଖା;
କାନନର ତରୁଲତା,
କୁସୁମର ମଧୁରତା,
ମୃଦୁ ଖେଳେ ସମୀରଣ,
କୋକିଳର କୁହୁ ସ୍ୱନ,
ମହୁମାଛି ଗୁଞ୍ଜନର ଶ୍ରୁତି ମାଧୁରିମା
ସୁଦୂର ଗଗନ ଅଙ୍ଗୁ ଅନନ୍ତ ନୀଳିମା ।

ନିଜ ନିଜ ପଥେ ଆସି, ମୋ ହୃଦ ଦୁଆରେ
ନିମିଷକ ଦରଶନ ଦେଇଯାନ୍ତି ବାରେ ।
ସରବେ ସେ ହୃଦେ ମୋର
ଅଜଣା ଅଚିହ୍ନା ଘୋର,
ତଥାପି ତାଙ୍କୁ ଭାବେ ମୋର ନ ଲୋଡ଼ି ପରାଣ,
କି ଦୂର ଅପ୍ରାପ୍ୟେ ନାହିଁ ରଖିଛି ଧିଆନ ।
ଶୂନ୍ୟମନେ ତରୁତଳେ ବସିଛି ମୁଁ ରହି,
କେତେ କିଏ ଆସି ବେଗେ ଯାଆନ୍ତି ପଳାଇ ।
ଶୂନ୍ୟ ମୋ ନୟନ ଆଗେ
ଗମ୍ଭୀର ନୀରବେ ଏବେ
ମୋ ନିଷ୍ଫଳ ଅବସ୍ଥବେ
ଫୁଲଟିଏ ଝଡ଼ି ଆହା ଅନାଏ ସରାଗେ !
ଦେଖିବାକୁ ହସ ତାର
ନାହିଁଟି ମୋ ଅବସର
ସିଏ ସଙ୍ଗେ ଯାଇଥିଲି
ଫେରି ନାହିଁ ଆସିଗଲି;
ମୋ କୁଟୀରେ ପୂର୍ଣ୍ଣ ଏବେ ଅଯୁତ ଅତିଥି,
ସଭିଙ୍କ ସଙ୍ଗେ ମୁଁ ସୁଖେ ମିଳନ ପୀରତି ।
ସରବେ ମୋ ପରିଚିତ
ପୁରୁଣା ପରାଣ ମିତ ।
କାହିଁତ ସେ ଭେଦ ନାହିଁ ତହିଁ,
ଆଲିଙ୍ଗନେ ହୃଦେ ରଖେ ନିହି ।
ତାଙ୍କ ସଙ୍ଗେ ମୁହିଁ ପୁଣି ହୋଇଯାଏ ଜଣେ;
ଆନ କେହି ନାହିଁ ପାଶେ,
ଆନ ଜ୍ଞାନ ନାହିଁ ଆସେ
ମୁଁ ଏକ ଅତିଥି ମହା ଅତିଥି ମିଳନେ ।
ଶୂନ୍ୟମନେ ତରୁ ତଳେ ବସିଥିଲି ଏକା,
କିଏ ଆସି କେବେ ମୋରେ ଦେଇଗଲା ଦେଖା;
କିଏ ଖୋଲିଗଲା ମୋର ଦୁଆର ଫିଟାଇ,
ଏ ସମ୍ପଦ ମୋ କୁଟୀରେ ଦେଇଗଲା ଥୋଇ,
କାହିଁ ହରିନେଇଗଲା ମୋ ଦୀନ ପସରା,
ଶୂନ୍ୟମନେ ବସିଥିଲି ପରା ।

□□□

ପଦ୍ମଚରଣ ପଟ୍ଟନାୟକ

# ଯୌବନର ଅଭିଯାନ

କିଏ ଏଣୁ ଆଜି ଚାଲି ଜୈତ୍ରଯାତ୍ରା କରି ଗୋ,
ପାଶେ ଶୁଭେ ମହାରବ ଧରି ଧରି ଧରି ଗୋ ।
ଏ ଯେ ଅଭିନବ ସେନା ନବ ଅଭିଯାନ ଗୋ,
ନବ ନବ ଅସ୍ତ୍ରଶସ୍ତ୍ର ନବ ତୀର ବାଣ ଗୋ ।
ଢାଲ, ବାଣ, ତରବାରି ସବୁ ନୂଆ ନୂଆ ଗୋ,
ନରପାଶେ ନାରୀଦଳ ଏ ସୈନ୍ୟରେ ଠିଆ ଗୋ !
ନାହିଁ ଢଳେ ରକ୍ତପାତ ଚାଲି ଚଳେ ଗୋପନେ,
ଜେତା ପାଶେ ପରାଜିତ ହସେ ନିଜ ମରଣେ ।
ନବ ତେଜ ନବ ଶକ୍ତି ଅଙ୍ଗେ ଅଙ୍ଗେ ଭରି ଗୋ,
ଶୋଷି ସଉରଭେ କ୍ଷଣେ ପୂରେ ବସୁନ୍ଧରା ଗୋ ।
ତରଳ ଅପାଙ୍ଗ ପାଶେ ସ୍ମିତ ହୁଏ ଠିଆ ଗୋ,
କ୍ଷଣେ କ୍ଷଣେ ଉଦ୍ଘାଟନ ବିଦାରଇ ହିଆ ଗୋ ।
ନାହିଁ ସ୍ୱେଦ, ନାହିଁ କ୍ଲେଦ, ନାହିଁ ଭେଦଜ୍ଞାନ ଗୋ,
ଯେଣୁ ଦେଖେ ମନ୍ତ୍ରମୁଗ୍ଧ ବିଚଳିତ ପ୍ରାଣ ଗୋ !
ବାଧା-ବିଘ୍ନ ଭୟ-ଭ୍ରାନ୍ତି ସବୁ ଯାଏ ଘୁଞ୍ଚି ଗୋ,
ପ୍ରେମର କିରଣେ ଯାଏ ଅନ୍ଧକାର ଲୁଚି ଗୋ !
ଉଚ୍ଚ ହିମାଳୟ ଶିର ପଡ଼େ ବେଗେ ନଇଁ ଗୋ,
ସପ୍ତସିନ୍ଧୁ-ବ୍ୟବଧାନ ନ ପାରଇ ରହି ଗୋ !
କୋମଳ ଚରଣେ କଣ୍ଟା ଫୁଟି ରକ୍ତ ଝରେ ଗୋ,
ହସି ହସି ପୋଛେ ନାରୀ ନିଜ ପଣତରେ ଗୋ ।
ଆସ ହେ ଯୌବନ, ଦିଅ ଦେଶ ଶିରେ ଟିକା ଗୋ,
ଲୁଚିଯାଉ ଶ୍ଳଥଚର୍ମ ଶୂନ୍ୟ ବିଭୀଷିକା ଗୋ !
ଲଲାଟେ ଚନ୍ଦନ ଦିଅ ଗୋରୋଚନା ଯୋଡି ଗୋ,
ବଦନେ କୁଙ୍କୁମ ନେତ୍ରେ ସ୍ନେହାଞ୍ଜନ ଗୋଳି ଗୋ !
ଶିରେ ଦିଅ ପାଟଛତା ନବ ଶିରସ୍ତ୍ରାଣ ଗୋ,
ନବରାଜ ଦରବାରେ ବଢ଼ିଯାଉ ମାନ ଗୋ !

ଲୁଚିଯାଉ ଭେଦ ଭ୍ରାନ୍ତ ସ୍ୱାରୂପ୍ୟ ଅଳକ ଗୋ,
ଗାଇଉଠୁ କୁଞ୍ଜେ କୁଞ୍ଜେ ନବତାନେ ପିକ ଗୋ !
ନୂଆ ରାଗରାଗିଣୀରେ ହେଉ ଦେଶ ଭରା ଗୋ,
ନବପ୍ରାଣେ, ନବତାନେ ଭରିଉଠୁ ଧରା ଗୋ ।
ଶତାବ୍ଦୀର କ୍ଳେଦ ଭେଦ ହେଉ ଭସ୍ମ ଚୁର ଗୋ,
ମାତୃଭୂମି କଣ୍ଠେ ଶୋଭୁ ସ୍ୱରକର ହାର ଗୋ ।
ଶିରେ କୋହିନୂର କଣ୍ଠେ କଉସ୍ତୁଭ ରାଜୁ ଗୋ,
ହୃଷୀକେଶ ମଧୁର ଶଙ୍ଖ ପୁରେ ପୁରେ ବାଜୁ ଗୋ ।
ଯୁଗ-ଯୁଗ ଅନ୍ଧକାର, ଅତ୍ୟାଗ୍ରହ ଭୁଲି ଗୋ,
ମାତୃଭୂମି-ବକ୍ଷ ଉଠୁ ପୁଣି ଗର୍ବେ ଫୁଲି ଗୋ ।
ଛୁଟୁ ଶିରା-ପ୍ରଶିରାରେ ଶୋଣିତର ଧାରା ଗୋ,
ହସୁ ଏ ଆନନ୍ଦ ଦେଖି ସରଗର ତାରା ଗୋ ।
ରାଜରାଣୀ ପାଉ ପୁଣି ରାଜରାଣୀ ମାନ ଗୋ,
ପୃଥ୍ୱୀପୃଷ୍ଠରେ ଉଚ୍ଚ ମୋ ଜନନୀ ସ୍ଥାନ ଗୋ !

□□□

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର

## ଲେଖା

କି ଲେଖା ଲେଖିବି ! ଆଉ ନଚଲେ ଲେଖନୀ,
ଗୀତ ଗାଇବାକୁ ତୁଣ୍ଡେ ବାଜିଲାଣି ଖଣି;
କୁହ୍ଲା କଲମଟା ଆଉ ପାରୁନାହିଁ ଟାଣି
ପିହାଇବୁଡ଼ାକ ତେଣେ ଫାଟିଲାଣି ପାଣି ।
ଲେଖୁଥିଲି ଦିନେ,—ଆଉ ଅଛି କି ସେ କାଳ !
ବାଘ ଖାଇଗଲାଣିଟି ସେ କାଳ ପଖାଳ ।
ଓଲଟା ହୋଇଛି ଯାଇ ଯାହା ଥିଲା ଦିନେ,
ଏବକୁ ହେଲାଣି ସବୁ କଥା ଭିନେ ଭିନେ !
ବସନ୍ତ ଗଲାଣି ଚ୍ୟୁଲି—ଆସିଲାଣି ଶୀତ,
ଅମ୍ବଡ଼ାଳେ କୋଇଲି ତ ଗାଉନାହିଁ ଗୀତ ।

ଗଲଣି ମଳୟ ଏବେ ବହୁଛୁ ହୁଗୁ,
ତୋର ଜନ୍ମ ପଛେ ଆଉ ହସୁନାହିଁ ତରା,
ଫୁଟୁନାହିଁ ପଦ୍ମଫୁଲ ଆଉ ସରୋବରେ,
ଗୁଣୁଗୁଣୁ ଗାଉନାହିଁ ଅଳି ପ୍ରେମଭରେ ।
ବାଉଳା ସୂରୁପ ତୁଟେ ହୋଇ ଅଥାନଥା
ଦୁନଆଯାକରେ ଲଗିଯାଇଛୁ ଗୁନିଆ ।
ନାହିଁ ସ୍ନେହ, ନାହିଁ ପ୍ରୀତି, ମମତା, ପ୍ରଣୟ,
ନାହିଁ ଶ୍ରଦ୍ଧା, ଯେନାଯେନ, ଚଢ଼ି ବଳମୟ ।
କଣୋଖର ସ୍ନେହହସ, ସହଜ ଅପାଙ୍ଗ
ମଧୁରିଆ ଲାଜ-ଲୁଙ୍କା ବଚନ ସରାଗ ।
ସଭିଏଁ ତ ତ୍ରସ୍ତବ୍ୟସ୍ତ ଉଦ୍‌ବେଗର ଦାଉ
ଯାଇଅଛୁ ଯୋଡି ଖାଲି ଲଗିଛୁ ଚଢ଼ାଉ ।
ଦଫା ଦଫା ଧପାଧପି, ଚଡା କଣ୍ଟାକଟି
ପଟି ଚଢ଼ାଚଢ଼ି ଆଉ ମୁଣ୍ଡ ଫଟାଫଟି ।
ଲାକେ ପଢ଼ି ସଢ଼ି 'କଳା' ଲୁଚଲଣି କାହିଁ,
ଅବା କଳା-ବଜାରକୁ ଗଲଣି ପଳାଇ ।
ଏହା ସବୁ ଦେଖି ଦେଖି ମୁଣ୍ଡ ଯାଏ ଭ୍ରମି,
ମରମ ଆବେଗେ ଯେତେ ପଡ଼ଇ ନରମି ।
ଚପୁଡ଼ିଲେ ଲେଖାରୁ ତ ଗଡ଼ୁନାହିଁ ରସା
ଲେଖିବାର ମଜଲିଶା ମିଳେ ଲୋକହସା ।
ଲେଖିବ କାହିଁକି କେହି—ପଢ଼ୁଚି ବା କିଏ,
ବାଇବଳୁ ପର ହୋଇ ଧାଆନ୍ତି ସଭିଏଁ ।
କାହାର ବା ବେଳ ଅଛି ବାଜେକଥା ପାଇଁ,
କି ଲଭ ଏଥିରେ ବୃଥା ସମୟ କଟାଇ !
ଯେବେ ବା ପଢ଼ୁଚି କେହି—ସିଏ ଖାଲି ଫାଙ୍କି,
ଦସ୍ତାରେ ବୁଲଇ ନେଇ ଥରେ ମାତ୍ର ଆଖି ।
ତେବଣି ହାତରେ ହଏ ଫୋପାଡ଼ ସେ ଲେଖା,
ପୋଛି ଦେଇ ମଗଜରୁ ତାର ଶେଷରେଖା ।
ସେତକରେ ଲେଖକର ବୈତରଣୀ ପାର,
ଆଉ ତାହା ସଙ୍ଗେ ସପ୍ତପୁରୁଷ ଉଦ୍ଧାର ।

□□□

ଶ୍ରୀ ଅନ୍ନଦାଶଙ୍କର ରାୟ

## ସୃଜନ-ସ୍ୱପ୍ନ

ଶୁଣିବ ଯଦ୍ଦି    ଶୁଣ ଗୋ ରାଣୀ
ସେ ନୁହେଁ ମୋର    ମରମ ବାଣୀ
ସେ ନୁହେଁ ମନକଥା ମୋ ।
ଯେ ଗୀତ ଦେଲି    ସେଦିନ ଗାଇ
ସେ ଗୀତେ ମୋର    ହୃଦୟ ନାହିଁ,
ନାହିଁ ସେ ଗୀତେ ବ୍ୟଥା ମୋ ।
କହୁଛୁ ସତ,    ଶୁଣ ମୋ ମିତ,
ଧ୍ୱଂସେ ମୋର    ମନ ନାହିଁ ତ
ସେ ନୁହେଁ ମୋର ବ୍ୟସନ ।
ପ୍ରଳୟ ଧୂମ-    କେତୁ ମୁଁ ନୁହେଁ
ନୁହଇ ଭୂମି-    କମ୍ପ ମୁଁ ହେ
ସୃଷ୍ଟି, ସ୍ଥିତି, ନାଶନ ।
ଗୋପନ କରି    କି ହେବ ପ୍ରିୟା,
ନୁହେଁ ମୁଁ ଝଡ଼    ନୁହେଁ ମୁଁ ନିଆଁ,
ନୁହେଁ ମୁଁ ଶମଶାନ ଗୋ ।
ଅନଳ ଆଣେ    ଆଦିମ ତୃଷା—
ସେ ସିନା ମୋର    ଛଦମ-ଭୂଷା !
ମୋ ତୃଷା ଊଷା ଆନ ଗୋ ।
ଆଜି ଏ ଶୁଭ    ଶାରଦ ପ୍ରାତ
ଶ୍ୟାମଳ ତୃଣ    ଆଲୋକସ୍ନାତ,
ସମୀର ବହେ ମଧୁର ।
ଶେଫାଳି ବାସେ    ବିହଗ ଗୀତେ
ପାସୋରିଗଲି    ଆଚମ୍ବିତେ
ଜଗତ ବ୍ୟଥା ବିଧୁର ।

ଚଉଦିଗେ ଏ ଉନ୍ମାଦନା—
ମାନବ ମନେ କାହିଁ ବେଦନା ?
କି ଦୁଃଖ ଦୂର କରିବ ?
ଯେଉଁ ଦିଗେ ମୁଁ ଦେଖଇ ଚାହିଁ
ଶୋଷର ଲବେ ଅଭାବ ନାହିଁ,
କେଉଁ ଅଭାବ ହରିବ ?
ପ୍ରଳୟ କଥା ପ୍ରଳାପ ସମ
ଶୁଭୁଛି ଆଜ ଶ୍ରବଣେ ମମ
କି ହେବ କା'ର ବିନାଶେ ?
ଏ ସୁଖ ଧନେ ଏ ଶୋଷପୁରେ
ଧ୍ୱଂସଲୀଳା ରହୁ ଗୋ ଦୂରେ
ମିଥ୍ୟା ମୋହ ପିନା ସେ ! □□□

ଜାତୀୟକବି ବୀରକିଶୋର ଦାସ

## ତମେ ଫେରିଆସ*

ତମେ ଚାଲିଗଲ ତମ ବାଟରେ
ନାଆ ବାନ୍ଧିଦେଇ ଅମ ଘାଟରେ ।
ଗଲ ଯିବାବେଳେ କହି ଏତିକି
ହିତ ଭଲପାଉଥିବ ଯାଥିକି ।
ଯେବେ ବଞ୍ଚାଇବ ଏହି ଛିତିକି
ତେବେ ମାନି ଚାଲ ସତ ନୀତିକି ।
ଥରେ ଆଣିଥିଲ ଦେଶ କଡ଼କି
ମନୁ ଭୁଲିଗଲ କିଣ ଏତିକି ?

* ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ରଚିତ ।

ଜଗି ବସିଅଛ ଜାକ ବୁଜୁଳି
ଆସି ଚମକାଇ ଦଏ ବଜୁଳି ।
ଖସେ ଆକାଶରୁ ବଷ ହାବେଳି
ପାଣି ଉଠେ ଦୁଇକୂଳ ଉଚ୍ଛୁଳି ।
ବାଟ ଭୁଲିଯାଇ ହେଲୁ ବାଁଉଳି
ଆମ ମନଟି ଗଲାଣି ଝାଉଁଳି ।

ତମେ ଫେରିଆସ କେଉଁ ବାଟରେ
ନାଆ ମେଲିଦିଅ ଏଇ ଘାଟରେ ।

□□□

ବୈକୁଣ୍ଠନାଥ ପଟ୍ଟନାୟକ

## ପଥ-ସଙ୍ଗୀତ

ପୁରାତନ ଗୀତ          କଣ୍ଠେ ମରଇ
ମରିବାର ଯାହା ମରୁ
ତରୁ ଶିରୁ ଖସେ          ପଲ୍ଲବ ପତ୍ର
ଝରିବାର ଯାହା ଝରୁ ।
କାନ୍ତ ହୃଦୟ ଶିଳା ତନ୍ତୁଁ ଜଡ଼,
ଖର୍ବ ହୃଏରେ ଯେତେ ତୋର ବଡ଼ !
ମଉଳେ ଗୋଲାପ—ସ୍ୱପ୍ନ, ଶୁଖଇ
ପ୍ରୀତି-ବାଣ ନୟନରୁ,
ମରିବାର ଯାହା ମରୁ ।
ତେବେ ତ ଶୁଭଇ          ଜୀବନର ଡାକ
ଲକ୍ଷ ବଧିର କଥା
ସାଗର କ୍ଷଣିକ          ନୀରବତା ବଳି
ଗମ୍ଭୀର ପ୍ରାଣର ବ୍ୟଥା !

ତୋଳୁରେ ଏକାନ୍ତ ଅନ୍ଧାରେ ଛନ୍ଦେ
କଙ୍କାଳ କୋଟି ଛବି,
ମରଣ ଗର୍ଭ ସଙ୍କେତ କରେ
ଆସ ଆସ ପ୍ରାଣେ ଭବି !
ଛତ୍ରର ଫାଟି ବନ୍ଧୁର ରୁଧିର
ନେଟେକ୍ର ଅଁଜଳି ବାଂଧୁଛର ଶିର
ଜଳଦ ରେଖେତରେ ପୁରାଣ ଜୀର୍ଣ୍ଣ
ଯାତ୍ରୀ କାହିଁକି ଡରୁ ?
ମରିବାର ଯାହା ମରୁ ।
□□□

କାଳିନ୍ଦୀଚରଣ ପାଣିଗ୍ରାହୀ

## ଆଗାମୀ

ବଜ୍ର ଗରଜଇ, ସଘନ ବହେ ବାୟୁ
ମହାକା ଭକ୍ତ ଯମ ଝଡ଼େ ମୋ ପରମାୟୁ
ଅସୀମ ସମୁଦ୍ରର କୋଳେ ଯେ ହୁଏ ଲୀନ
ଅଗାଧ ଜଳଧି ତଳରେ ଯଥା ମୀନ !
ବନ୍ୟା ସମ ବେଗେ ଆସଇ ଶୋକ ମାଡ଼ି
ଚକ୍ଷେ ଅନ୍ଧକୂପ ଅଘାତ ଯାଏ ମାରି
ଅବଶଇଯାଏ ଦେହ ପାଦରୁ ଶେଷ ଭୁଇଁ
ଅଛୁ ବା ନାହିଁ ଜଣେ ନ ପାରେ ବୁଝି ମୁହିଁ !
ତଥାପି ଦୁନିଆକୁ ଦାରୁଣେ ହସ ହସି .
ଆଗାମୀକାଳର ମୁଁ କବିତା ରଚେଁ ବସି !
ଗଭିର ସକାଳର ଜାଗର ପରି ମୃଦୁ
ବାସନା ଆସି କେତେ ମିଳାଇଯାଏ ଦୂର ।
ଗଭିର ସକାଳର ଶେଫାଳି ଫୁଲପରି
ଦଳକ ପରେ ଦଳ ଖସିବେ ପଡ଼େ ଝରି !

ଜୀବନେ ଯେଉଁ କଥା ହୋଇନି ପୂର୍ବେ
ଛୁଟରେ ଲୁହା ହମ ଚାଟକ ଟହଟହ
କି ଅଛି ପରିଣାମ କି ଅବା ତା'ର ଗତି
ବ୍ୟାପମ ହନେ ହେବ କି ଭୁତପତ୍ତି ?
ଜାଣିବ ଦଶଦିଗ ନିଶ୍ଚୟ ରବି ଶଶୀ
ଆଗାମୀ କାଳର ମୁଁ କବିତା ରଚେଁ ବସି !

ଯୋଡ଼ଇଁ-ଛନ୍ଦ ମୁଁ ବିପୁଳ ଜୀବନର
ଖେଳଇ କତ ଯହିଁ ବିଶ୍ୱ ଚରାଚର
ସୃଜିଛି ମରଣକୁ କରି ଯେ ଉପହାସ
ବେଦନା ଶୋକ ତାପେ ପୀଡ଼ିଛି କରି ଦାସ !
ଛୁଟଇ ନାଚି ଯହିଁ ଊର୍ମି ନିରନ୍ତର
ସୃଜିଛି ନ ଜାଣି ସେ କିଏ ବା ନିଜ ପର
ବିରାଟ ସେ ଜୀବନେ ସବୁରି ଅଛି ମୂଲ
ବୁଝଇ ନର ଭିନ୍ନ ପଢ଼ିଲେ ନିଜ ଭୁଲ-
ପଢ଼ିଲେ ପର ଦୁଃଖ ପାରଇ ଅନୁଭବି
ଆଗାମୀ କାଳର ମୁଁ କବିତା ରଚେଁ କବି !

ପୁରୁଣା ଅଛି ଯେତେ ନୂଆର ବିସ୍ମୃତ
କିଏ ସେ ବାଛୁ ଚାହୁଁ ନିଜର ଯାହା ହିତ ।
ମିଳାଏ ଅନ୍ଧାର ତାହାର ମହାତେଜେ
କୋଟିଏ ସୂର୍ଯ୍ୟର ରଶ୍ମି ଆଣେ ସେ ଯେ !
ମରଣ-ମୁଖୀ ଯେବେ ଶତ୍ରୁ ଚିର ତା'ର
ଛଳନା ମିଛ ପାଇଁ ବନ୍ଦ କରେ ଦ୍ୱାର
ଦୁନିଆ ପରେ ଯେତେ ବଢ଼ିଛି ଅକାରଣ
ତାହାର ପରଶୁରେ କାଟଇ ସବୁ ପଣ
ତାହାର ପରଶୁରେ ମୁକ୍ତ ହୁଏ ଧରା
ମୁଁ ସେହି ଜୀବନର କବିତା ରଚେଁ ପରା !

କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଖରେ ହେଲେ ଘର,
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଖୋଜେ ଯେତେ ଯହିଁ ବାଳକ ବାଳିକା ତ

ଦୁଇଟା ଲୁଗା ଜାମା ସଭିଏ ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାର ନାହିଁ ଥିଲେ
ବେକାର ରହିବାକୁ ନାହିଁଟି ଅଧିକାର
ସଭିଏ ପାଇଁ କାମ ଯୋଗାଏ ସରକାର
କହିବା ପାଇଁ କଥା ସଭିଏ ଦାବି ଅଛି
ମୁଁ ସେହି ସମାଜର କବିତା ବସେ ରଚି ।

ନାହିଁଟି ଅଧିକାର ମରିବା ଲାଗି ସହି
ଭିକ୍ଷା ଅନାହାରେ ତାଡ଼ନା ଖାଇ ସହି
ମରିବା ପାଇଁ ପୁଣି ଧନର ପାରିବାରେ
ନାହିଁଟି ଅଧିକାର କାହାର ସେହିଠାରେ ।
ଗରିବ ଯେ ସମାଜେ ଜାଣଇ ନାହିଁ ଖିଅ
ଧନିକ ନ କରଇ ଧନରେ ଡକାଇତି ।
ଧନର ବନ୍ଧନରେ ନ ହୁଏ କେଣା ସଭି
କେବଳ ପଶୁ ସହି ବୋଲାଏ ନାହିଁ ପ୍ରଭୁ,
କେବଳ ମୂର୍ଖର ଶକତି ନାହିଁ ଭୁଜେ,
ଆଗାମୀ ସମାଜର କବିତା ରଚେ ମୁଁ ଯେ !

କବିତା ରଚେ ପୁଣି ନୂତନ ଧର୍ମର
ସୁବୋଧ ହୁଏ ଯହିଁ ବର୍ଣ୍ଣେ ଆପାମର
କାହାର ସେ ଧରମେ ନାହିଁଟି ଥିଲେ ଦାବି
ପଢ଼ିବ ମଥା କୋଡ଼ି ମରିବ ଭୟେ ଭାବି !
କହଇ ସେ ଧରମ ସହଜ କରି କଥା
ଆଲୋକ ବାୟୁ ସମ ଆଣଇ ସ୍ୱାଧୀନତା ।
ଛଳ ଅଟେ ଯାହା ରହିଛି ଯେ ବା ନୀତି
କେତେ ବା ସତ ତହିଁ କେତେ ବା ଭୁଲା ମିଛ
ସକଳ ସତ ତହିଁ ଉଠଇ ମଥା ଟେକି
ସେହି ସେ ଧର୍ମର ଗାଥା ମୁଁ ବସେଁ ଲେଖି
ମିଛରେ ଗଢ଼ା ଯାହା ପଢ଼ିବ ଯେବେ ଭାଜି
ଆଗାମୀ ସେ କାଳର କବିତା ରଚେଁ ଆଜି ।



ମାୟାଧର ମାନସିଂହ

## ବିରହୀ ଘନ

କି ଖୋଜୁଛ ହେ ବାରଦ ! କେଉଁ ରତ୍ନ ପାଇବାର ଆଶେ,
ଚିର ତବ ଅନ୍ୱେଷଣ ଏ ନଭସେ ଆକୁଳ ନିଃଶ୍ୱାସେ,
କ୍ଷୁବ୍ଧପ୍ରାଣେ ଖୋଜି ବୁଲ ଆକାଶର ବିରାଟ ପ୍ରାନ୍ତରେ
କି ବ୍ୟଥା କି ରୁଦ୍ଧଦାହ ଅଛି ଘନ ତୁମର ଅନ୍ତରେ;
ଯୁଗଯୁଗାନ୍ତରୁ ଖୋଜି ଉପଶାନ୍ତି ପାଇନାହଁ ତାର,
ବ୍ୟଥା ଅନିବାର ।

ବିରାଟ ଗମ୍ଭୀର ସଦା ବଦନର ଛବି ତବ ଘନ !
ନିରାଟ ବିଷାଦ-ରେଖା କପାଳରେ ହୋଇଛି ଲିଖନ ।
ଚିନ୍ତାର କାଳିମା ତୁମ୍ଭ ଗଣ୍ଡେ ତବ ହୋଇଛି ଅଙ୍କିତ,
କେତେ ଯୁଗ ଉକ୍ତ-ସ୍ମୃତି ହୃଦେ ଯେହ୍ନେ ହୋଇଛି ସଞ୍ଚିତ
ସେ ସ୍ମୃତିର କଶାଘାତେ ପ୍ରାଣ ଯେବେ ହୁଅଇ ବିକଳ
ସ୍ୱେଦ ଅବିରଳ ।

କିଏ ସେ ଲାବଣ୍ୟବତୀ ପୁଣ୍ୟବତୀ ଭାଗ୍ୟବତୀ ବାଳା;
ଯାହାପାଇଁ ହୃଦେ ଘନ, ଧରିଅଛ ଏ ବରଣ-ମାଳା,
ନୟନର ତପ୍ତ ଲୁହେ ଆର୍ଦ୍ର କରି ଆକାଶ ଅବନୀ
ଯୁଗ ଯୁଗୁ ବୁଲୁଥାଅ କି ବ୍ୟାକୁଳେ ସମସ୍ତ ଧରଣୀ,
ମନ୍ଦ୍ର ନାଦେ ଡାକୁଥାଅ, ଅନ୍ତରିକ୍ଷ ଯାଉଥାଏ ଭରି
କାହା ନାମ ଧରି ।

କେମନ୍ତେ ସେ ଅଭାଗିନୀ ହୃଦହୀନା କଠିନା-ପାଷାଣୀ,
କେଉଁଠାରେ ଅଛି ରହି ହୃଦଫଟା ଏ ଡାକ ନ ମାନି,
କେଉଁ ଆଶେ ଅଛି ସେ'ବା ପ୍ରାଣଭରି ଏ ପ୍ରେମ ତିଆଗି
ବକ୍ଷଭରି ଏ ସେନେହ ଫିଙ୍ଗି ଅବା ଦେଇଛି କି ଲାଗି;
ଏ ଡାକେ ସେ ନାରୀରକ୍ତ ଉଦ୍ଧରଲେ ଉଠେ ନାକ ଫୁଟି
ବିରହରେ ଲୁଟି ।

ବର୍ଷେ ତୁମେ ବାରବାନ୍ଧ ପ୍ରଣୟୀର ଛବି ସାଲଟିକା,
ତେଣୁ କୁଞ୍ଜେ ତବ ଆଣେ ଫୁଟିଉଠେ କଣୋଖି ଯୂଥିକା,
ବନ୍ଧୁ ବୋଲି ନାଚିଉଠେ ଡାଳେ ଡାଳେ ବରଷି ବରଷି
ଯୁବକ ଯୁବତୀ ଗଣ୍ଡେ ବିଚ୍ଛେଦର ଲୋତକ ଗଡ଼ଇ,
ବିଶ୍ୱର ସକଳ ହିଆଁ କାଟି ହୁଏ ପୁଷ୍ପଶର-ଧାରେ
ତବ ଅଭିସାରେ ।

ତୁମପରି ବନ୍ଧୁ ଧନ, ଏ ଦୀନର ହଜିଛି ରତନ,
ପ୍ରଣୟର ଡୀବି ଗୋଟି ହୃଦାକାଶୁ ଲଭିଛି ପତନ,
ଜୀବନ ଲାଗୁଛି ଶୂନ୍ୟ, କ୍ଷୁଦ୍ର ପ୍ରାଣ ହାହାକାରମୟ
ପଲକେ ପଲକେ ଛିଣ୍ଡି ବେଦନାରେ ପଡ଼େ ମୋ ହୃଦୟ
ଆସ ସମ-ଦଶା-ବନ୍ଧୁ ମିଳାଇବା ଉଭୟେ ଲୋତକ
ଶାନ୍ତ ବସେଚକ ।

□□□

ଗୋଦାବରୀଶ ମହାପାତ୍ର

## ମଲାଟ

ପୁସ୍ତକ ଡାକ କହେ—ହେ ପାଠକ, ଗ୍ରାହକ ମୋର,
ଭିତର ଖୋଲ
ଲେଖନୀ ମୂଳର କର ନା ମୂଲ !
ପଇସା ଦେଲ !
ଶସ୍ତା ଆଜି ଏ ଛାପାଖାନା ତଳେ ବେପାର ଚାଲେ
ଦୋକାନ ତଳେ,
ଭାଷା ତୁଲେ ନାହିଁ ଛନ୍ଦ ମିଳେ,
ଭାବନା ଭୁଲେ !!
ସଭ୍ୟତା ଆଜି ମଲାଟ ଉପରେ ଚାଲିଛି ଖାଲି
ଯାଉଚ ଭୁଲି,

ରଙ୍ଗୀନ୍ ଛବି କାଗଜ ମେଲି
ଦେଖୁଛ ବୋଲି ?
ଭୂଷଣପ୍ରଧାନ ବେଶ ପରିଧାନ ସଜ୍ଜନ
ଯାହାରେ ମଣ
ଭିତରୁ କି ତାର୍ ବଚନ ଶୁଣି
ଉଖାରି ଗୁଣ ?
ପରିଧାନ ତଳ ଚୋର ତସ୍କର ବିଷମ ଅତି
ଓଲଟା ସ୍ଥିତି
ବାହାର ଦିବସ ଭିତର ରାତି
ନକଲି ଯତି !
ସଭ୍ୟତା ଆଜି ଚାଲିଛି ଦେଶରେ
ପକାଇ ବାଜି,
ନୀତି, ସମ୍ମାନ ଯାଉଛି ଭାଜି
କାଲିକି ଆଜି
ସ୍ୱାଦ ଗନ୍ଧର ନକଲି ବେପାର ଏଇଠି ଚଳେ
ମଲାଟ ତଳେ
ଦେଖିପାରୁଥିବ ଏ ଉତ୍କଳେ
ବାହାରେ ଘରେ ।
ତେଲରେ ଅଗସ୍ତ ପଡ଼ିଲେ ବି ଧସ୍ତ
ଯାଉଛି ମିଳି
ଚନ୍ଦନରେ ବାଲି,
ଚୋରି ଦୁର୍ନୀତି କି କୋଲାକୋଲି
ଲୋକଙ୍କ ତାଳି !!
ମହାକାଳଫଳ ବାହାର ରୁଚିର
ଭିତର ତାର
କି ଛାରଖାର,
ମଲାଟ ଉପରେ ଚାଲିଛି ଖେଳ
ଏ କାରବାର ।

ସଚ୍ଚିଦାନନ୍ଦ ରାଉତରାୟ

## କବି ପ୍ରତି

ଆହେ-କବି ! ବାରେ ହୁଅ ଠିଆ
ନେଇଯାଅ ତାର ମାଳା
  ନୁହେଁ ଫୁଲ, ସେ ଯେ ଦୀପ୍ତ ନିଆଁ ।
ପ୍ରାଣର ଗୋପନ ଲିପି
  ମରମର ଆଦିମ ବେଦନା
ତହିଁ ମଧ୍ୟେ ଲଭେ ରୂପ
  ଲଭେ ଭାଷା କରୁଣ, ମୋହନ !
ସୃଷ୍ଟିର ଗୋପନ ଉତ୍ସ
  ଜଳିବାର ଅନିବାର କ୍ଷୁଧା
ଦୀପଦାନି ସମ ଜଳି
  ଢାଳିବାର ଶୁଭ୍ର ଜ୍ୟୋତି ସୁଧା;
  ପରିତ୍ରାଣ ଲଭିଅଛୁ ତହିଁ,
ଜୀବନର ମହୋତ୍ସବେ ମରଣର
  ସ୍ୱପ୍ନ ରହି ରହି···
  ଆପଣାରେ କରିଛୁ ଘୋଷଣା,
ମରଣର ସନ୍ଧି-କବି ଦେଇଯାଏ
  ଆଜି ତା' ସୂଚନା ॥
କମଳବିଳାସୀ କବି ! ଦେଖିଯାଅ
  ନୁହେ ଏ ଛଳନା,
ନୁହେ ଏହା ନିଶାନ୍ତର
  ସ୍ୱପ୍ନନିଶା ଗତାନୁ କଳ୍ପନା !
ସପନର ସ୍ୱାତୀ ତାରା ସମ ଏହା
  ତ୍ରିଭୁବନ ବାରେ
ତମିର ସାଗର ତଳେ
  ରଜନୀର ଶାଣିତ ଅନ୍ଧାରେ

ଜଳିବାର ଏ ମହାତପସ୍ୟା,
ନିଜେ ସେ ଜଳିଛୁ ଜାଳି କୋଟି ବୁକେ
ଜ୍ୱଳନ ପିପାସା !!

× × × ×

ପୋଛ କବି ପୋଛ ଅଶ୍ରୁନୀର
କ୍ରୌଂଚ ମିଥୁନର ଶୋକେ ଅଭିଭୂତ ତବ ନେତ୍ର-ନୀର ।
ମଣିଷର ଦେଖି ଏ ସାଧନା
ବୁଣିଦେଉ ଅଗ୍ନିକଣା, ବଜ୍ରଗର୍ଭ
ଝଡ଼ର ସୂଚନା
ଲଭିଯାଉ ଲୋତକର ନଦୀ,
ଆସନ୍ନ ଝଡ଼ର ବାଣୀ ପ୍ରତି କଂଠେ
ଝରୁ ନିରବଧି ।।
ବନ୍ଧୁ ବନ ତଳେ
କିରାତର ଶରବିଦ୍ଧ ବନପକ୍ଷୀ କରୁଣ ଦୁଃଖରେ
କାନ୍ଦିଥିଲୁ ବାରେ,
କାଂନ୍ଦିଥିଲି ତୁମ ସାଥେ ବନଲତା,
ତରୁଦଳ ମାନେ ।
ଆଜି ଏଥି ମଣିଷର ଶିଶୁ
ପଡ଼ିଛି ଭୂଇଁରେ କୋଟି ଅସହାୟେ ମରଣର ବଶୁ ।
ଶର କି ହେ ଗଲା ସରି
କବି ତବ ନୟନ ତୂଣୀରୁ ?
ବ୍ୟଥାର କରୁଣ ଲିପି
ହଜିଗଲା ଆଜି କି ବାଣୀରୁ ?
କାଂଦ କବି ଶେଷ ଥର ପାଇଁ
ଗଗନ ପବନ ଯାଉ ସେଇ ମ୍ଳାନ
ବ୍ୟଥାରେ ମିଳାଇ
ବନେ ବନେ ଉଠୁ ହାହାକାର,
ଧରଣୀରେ ହେଉ ବନ୍ୟା
ମାଡ଼ିଆସୁ ଅଶ୍ରୁ ପାରାବାର,
ତଳେ ମାଟି, ଉପରେ ଆକାଶ
ଭରିଦେଉ ଅଶ୍ରୁଜଳ ତହିଁ ମଧ୍ୟେ ଯେତେ ଅବକାଶ ।।

ସେ 'ମହାପାବନ
ସ୍ୱପନଖଚିତ ତବ ଅଲକାରଂ
ପ୍ରବାଳ-ତୋରଣ
ଦେଉ ଧ୍ୱଂସକରି
ଫଗେ ତାର୍ 'ଭଜିଯାଉ ମରି
ତୁମରି କଳ୍ପନାଜାତ ଗଜଦନ୍ତ ରଚିତ ମିନାର,
ମୃତ୍ତିକାରେ ବ୍ୟଙ୍ଗକରି କ୍ଷଣେ ଯାହା
ଘନ ଇଂଦ୍ରଜାଲ ।।

× × ×

ମହମର ସ୍ତମ୍ଭ
ଜଳିଯାଏ ହୁତୁ ହୁତୁ
ନୁହେ ଶେଷ, ଶେଷର ଆରଂଭ !!
ଆରେ ଆରେ ପଳାୟନପଂଥୀ !
ପଳାଇବୁ କାହିଁ ଆଜି ଛିନ୍ନକରି ଧରଣୀର ଗ୍ରଂଥୀ ?
ଲୁଚିବୁ ବା କାହିଁ
ମୃତ୍ତିକାର ଏତେ ଦାବୀ
ପାରିବୁ କି ଆଜି ତୁ କଟାଇ ?
କାହିଁ ଯିବୁ ନେବୁରେ ଆଶ୍ରୟ
ତୋର ସେଇ କୁଂଜବନ ଦେଇ କି ସେ ପାରିବ ଅଭୟ ?
ଏ ଘୂର୍ଣ୍ଣିର ସର୍ବଗ୍ରାସୀ କାୟା
ତାରେ କି ଧରିବ ନାହିଁ ପ୍ରସାରି ତା
ପ୍ରେତାୟିତ ଛାୟା ?

× × × ×

ପଥଭ୍ରାନ୍ତ କବି
ଏତେ ଦିନ ସପନରେ ଲେଖିଅଛ ମାୟାମୃଗ ଛବି ।
ଏତେ ଦିନ ଗାଇଅଛ ତୁମେ
ଦ୍ରାକ୍ଷାର ପୀବର ସ୍ତନ ଚୁମ୍ବିବାଙ୍କୁ କେଉଁପରି ଚୁମେ ।
ଦେଖିନ ଅନୂଢ଼ା ଦେହେ
ସହି ସହି ଶୋକ, ଅନଶନ,
ମଉଳିଚ ତନୁଶିଖା, ଫୁଟିନାହିଁ କପରି ଯୌବନ
ମା'ଆର ଲୁଳିତ ସ୍ତନେ, ଶୁଷ୍କ ଚର୍ମେ
ଶିଶୁ କେତେବାର

ଶୋଷୀ, ପାଇନାହିଁ କ୍ଷୀର,
ଝରିଅଛୁ ଲହୁ ଧାର ଧାର
ବଂଧା ଦେଣେ ସଂଧା ବାଯୁ
କାଂଦିଅଛୁ ଖାଲି ଅଭିନାଦେ
ନପୁଂସକ ଭବିଷ୍ୟତ ବର୍ତ୍ତମାନ ପଂଗୁ ଅବସାଦେ ।
କେହି ନାହିଁ କରେ ପ୍ରତିବାଦ,
ମୃତ କଂଠେ ଦିଏ ନାହିଁ କେହି ଥରେ ଜୀବନର ସ୍ୱାଦ
ଦେଖିଛ କି ତେବେ ତାହାଲାଗି
କାରାର ଶୃଂଖଳ ପୁଣି ଘାତକର ଖଡ଼୍‌ଗ ଉଠେ ଜାଗି
ଏଥି କେଉଁପରି ?
ଝରା ବକୁଳର କବି ! କି ଦେଖିବ କହ କହ ସ୍ମରି,
ଦେଖିନ ତ କଷ୍ଟ,
ପଦ୍ମଶ୍ରେଣୀ ଦେଣେ ତବ ଏ ସବାଦ,
କେବେ ପହଂଚଛୁ ?
ଖାଲି ତମ ଅଭିଜାତ ମନ
ଆଜଯାକେ ଦେଖିଅଛୁ ଅସ୍ପଷ୍ଟ ମର୍ମର-ସ୍ୱପନ ।
ଅଂଗୁର କୋରକ ପରି ଲତାସ୍ଥିତ ଉର୍ବଶୀର ତନୁ
ଗଢ଼ିତ ନଗାଡ଼ି ତୁମେ
ସପନର ଶତ ଇଂଦ୍ରଧନୁ ।
ତେଣୁ କେବେ ମଣିଷର ପାଇଁ
ଟୋପା ଏ ଲୋତକ କେବେ ଚକ୍ଷୁରୁ
ତାର ଝରି ନାହିଁ ॥

× × × ×

ଯେଉଁଠି ମରଇ ଶିଶୁ,
ଜନନୀର ଆର୍ଦ୍ର ବୁକେ ଶୋଇ,
ଫୁଲର ଫସଲ ଯାଏ
ବୈଶାଖର କାଳଝଡ଼ ଧୋଇ,
ତୁମର ନଂଦନ କଳା,
ତୁମର ଏ ମାଧବୀ କଳ୍ପନା
କିପରି ମଣିଷ ସତେ
କହ କବି କରିବ ଅର୍ଚ୍ଚନା ?
ସେ ଯେ ନିଃସ୍ୱ, ସେ ଯେ ହତଭାଗା,

ଅଛି ଖାଲି କ୍ଷୁଧା, ତୃଷା, ଆଉ ଅଛି ଏତେ ଟିକେ ଜାଗା—
ଧରିବୁକେ, ମରିବାର ପାଇଁ,
ଚରଣେ ଶୃଂଖଳ ଅଛି
ଏହା ଛଡ଼ା ଆଉ କିଛି ନାହିଁ ।
ସେ ଯେ ସର୍ବହରା ।
ହରାଇଛି ସବୁ କିଛି, ବାକୀ ଅଛି ଶୃଂଖଳ ଓ କାରା !!
ଆଜି ମ୍ଳାନ ଆଖିରେ ତାହାର
ଚୈତ୍ରର ସୁରଭି ଗନ୍ଧ
ହରାଇଛି ସବୁ ମାନେ ତାର—
ସବୁ ସାର୍ଥକତା,
ତେଣୁ ତାକୁ କ୍ଷମ କରିବ ବୁଝିନା ସେ
ବୋଲି ତୁମ କଥା ।।

× × ×

ଧ୍ୱଂସ କରି ସବୁ ଅତ୍ୟାଚାର
କେ ଦେବ ତା' ବୁକେ ଆଶା
ମନେ ଦବ ଦୁରଂତ ସ୍ୱପ୍ନର ?
ଧ୍ୟାନରେ କେ ଆଣିବ ସ୍ଥିରତା
ଜୀବିକାର ଯଂତ୍ର ବୁକେ ଜୀବନର ସଦ୍ୟ ପ୍ରଖରତା ?
ପଶ୍ଚରଇ ସକାଳ ଆଲୋକ
ଜାଗ ଜାଗ ବୃହନ୍ନଳା ! ଗଳିଯାଉ
ପଳିତ ନିର୍ମୋକ ।।
ମଣିଷର ଯୁଗ ଆଣ କବି
'ନିରକ୍ତ କାର୍ତ୍ତିକ' ପ୍ରାନ୍ତେ ସୃଜନର ଆରକ୍ତ କରବୀ
ଫୁଟିବ ଗୋ ତେବେ
ଚିର ବସଂତର ଧ୍ରୁବ ବନେ ବନେ
ଝଂକାରିବ ସେବେ ।।
କର କବି ତେଣୁ ତୀର୍ଥସ୍ନାନ
ଏ ଶିଖାର ପୁଣ୍ୟ ତେଜେ
ହଉ ସବୁ କ୍ଳାଂତିର ନିର୍ବାଣ ।।

□□□

ଅନନ୍ତ ପଟ୍ଟନାୟକ

## ସ୍ୱପ୍ନ ଦେଖୁଛି

ସେଇ ଜାତିରେ ମୁଁ ଜନ୍ମ ଲଭିଛି ପରା,
ଯେ ଜାତି ଜୀବନୁ ପାସୋର ଯାଇଛି ହସ,
ନୟନେ ଯାହାର ଅସରା ଅଶ୍ରୁ ଭରା,
ହୃଦୟ-ଶିଳାରେ ନଗୁଡ଼େ ଥରୁଛି ହସ ।

କେମନେ କହୁଛ ସ୍ୱପ୍ନ କରିବ ପେଶା
ସ୍ୱପ୍ନ କାହାଣୀ ଶୂନ୍ୟେ ଝୁଲୁଛି କାହିଁ ?
ମୃତ୍ୟୁ ନୀଳିମା ଭଗ୍ନ ଦେହେ ମୋ ନେସା,
ଅନ୍ନମୁଠିର ପଶ୍ନ ମାପେ ଯା ହାଇ ।

ମୋ ସମ ଭେବେ ରେ ସ୍ୱପ୍ନ ଦେଖୁଛି କିଏ ?
ଗାଉଛି କିଏ ରେ ପ୍ରଳୟେ ପ୍ରଣୟ-ଗୀତି ?
ଅଳସ ବିଳାସେ ଶୋଇ ଯେ ସ୍ୱପନ ଲିହେ
ନରକ ଦ୍ୱାର କି ରଚଇ ସରଗ ସ୍ଥିତି ?

କୁଟୀର ଦୁଆରେ ଫୁଟେ ରେ ମୋହର ଫୁଲ,
ସହରତଳିରେ ଶୋହେରେ ମୋହର ଆଶା,
ବିପଣୀ ବୀଥିରେ ବଣିକ କରେ କି ମୂଲ ?
ଶିଶୁର ଦରସେଟି କୁହାଟି ଉଠେ ମୋ ଭାଷା ।

କମାରଶାଳରେ ଅନଳ ଦୋଳରେ ନିତି
ସ୍ୱପନ ମୋହର କୁସୁମ ପରଶ ଆଣେ,
ଗହଳ ବିଲରେ ପସିଣଉଚ୍ଛୁଳା ପ୍ରୀତି
ଭିଜାଏ ଜୀବନ ମଧୁର ଆଲୁଅ ସିଣେ ।

ସ୍ୱପ୍ନ ଦେଖୁଛି—ସହର ପଲ୍ଲୀ କୋଳେ
ଚଳିଲ ମଣିଷ ମୃତ୍ୟୁବିଜୟୀ ସଭ,
ତରୁଣୀ ଅନାଏ ସୃଜନ ଆବେଶ ଭୋଳେ
ତରୁଣ ଅଧରେ ହାସ୍ୟ-ପଡ଼ୁଛି ଝର ।

ସ୍ୱପନ ଦେଖୁଚ—ହିଂସା ପରଶ ନାହିଁ,
ଜାଣେ ନା ଜାତ ମୋ ମାଲିକ ମୂଲିଆ କଥା,
ଦସ୍ୟୁ ବଣିକ ରାଜନ୍ୟ ଯାଉଚ କାହିଁ
ସମାନ ସକଳେ, ଉଚ୍ଚ ମଣିଷ ମଥା ।

କହିଲ କିଏ ସେ ବିଜୟ ଲୀଳାର ଛନ୍ଦେ
ବିଶ୍ୱ ଭୁବନେ ଅଜଣା ଆଲୋକ ବାଣୀ,
ଝଲିଲ କିଏ ସେ ସାଧନା ସିଦ୍ଧି ବଳେ
ପ୍ରଣବ-ରାଗିଣୀ, ପୁଲକ ପରାଣେ ମାନି ।

ସଉଧେ ସଉଧେ ବାଜିଲା ମୁରଜ ବେଣୁ,
ବଉଦ ମହଲେ ନାଚିଲା ତାହାରି ସୁର,
ସମୀରେ ସମୀରେ ଉଜ୍ଜ୍ୱଳ ଆଶାର ରେଣୁ,
ନିତ୍ୟ ନୂତନେ ପୂରିଲା ଜୀବନପୁର ।

ଏ ମର ମଣିଷ ଅମର ହେଲା କି ଧୀରେ
ଆପଣା ହାତରେ ଆପଣା ଜୀବନ ରଚି,
ମୈତ୍ରୀ ମୁକୁଟ ଝଲସେ ସକଳ ଶିରେ
ବାହୁରେ ପ୍ରଣୟ ବଳୟ ଦେଇଛି ଖଚି ।

ସ୍ୱପନ ଦେଖୁଚ—ମୋ ତହୁଁ ସ୍ୱପନ କିଏ
ଉପାସ ଭୋକରେ ଦେଖୁଚ କହ ତ ଭଲ ?
ଗରଳ ଉଗାର ସେ ଜନ ପରାଣ ନିଏ
ସ୍ୱପନ ଦେଖେ କି ଜଳାଇ ଜୀବନଖେଳା !

□□□

ରାଧାମୋହନ ଗଡ଼ନାୟକ

# ଅୟି ପୃଥ୍ୱୀ !

ଅୟି ପୃଥ୍ୱୀ, ଆଉ ଥରେ କାମଧେନୁ ହୁଅ ଆଜ ତୁମେ,
ବୁଭୁକ୍ଷାର ଦହନେ କି ହରାଇବୁ ପ୍ରାଣ
ଆମେ ସବୁ ମନୁର ସନ୍ତାନ,
ତୁମର ଏ ସ୍ନେହାସ୍ୱିତ ଭୂମେ ?
ଅୟି ପୃଥ୍ୱୀ,
ଆଉ ଥରେ କାମଧେନୁ ହୁଅ ଆଜ ତୁମେ ।
ଶସ୍ୟହୀନ ହେଲା କ୍ଷେତ୍ର, ପର୍ଣ୍ଣହୀନ ହେଲା ମହୀରୁହ,
ଅନ୍ନହୀନ ହେଲା ଯେବେ ଗୃହ
ଆକୁଳ ପ୍ରକୃତି-ବର୍ଗ ଦେଖି ତନ୍ଧି ଦୁରନ୍ତ ଦୁର୍ଭିକ୍ଷ
ଆର୍ତ୍ତି କଳ-କୋଳାହଳେ ଭରିଦେଲେ
ପଥ ଘାଟ ପାଣ୍ଡୁ ଅନ୍ତରୀକ୍ଷ ।
ଅୟି ପୃଥ୍ୱୀ,
ତୁମେ ତେବେ ଠିଆହେଲ ଧରି ଏକ କାମଧେନୁ ମୂର୍ତ୍ତି,
ଶୁଣାଇଲ ସ୍ନେହସିକ୍ତ ଆଶ୍ୱାସ ବଚନ,
'ହେ ରାଜନ,
କର ମୋତେ କର ହେ ଦୋହନ ।'
ମନୁ ହେଲେ ବତ୍ସତଷ୍ଟି, ଦୋଗ୍ଧା ହେଲେ ପୃଥୁ,
ସ୍ରବିଲା ଦୁଗ୍ଧର ଧାର
ଶସ୍ୟର ସମ୍ଭାର
କମ୍ରୁ ଶିଖା ଯେନ ପୁଣି ଉଦ୍ଭାସିଲା ବିବର୍ଣ୍ଣ ସଂସାର ।
ମୂର୍ଚ୍ଛିତ ଉଠିଲା ପୁଣି ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟର ରତୁ,
ଘରେ ଘରେ ଦ୍ୱାରେ ଦ୍ୱାରେ ଉଠିଲା ଉଚ୍ଛୁଳି
ଘୃତ ଅନ୍ନ ଦଧି ଦୁଗ୍ଧ ପାନ
ସନ୍ତୋଷର, ତୃପ୍ତିର ମାଧୁରୀ ।

ସେ କେଉଁ ଯୁଗର କଥା
ଏ ଯୁଗ ତ ସମ୍ପୂର୍ଣ୍ଣ ପୃଥକ;
ଏକକର ରାଜ୍ୟ ନାହିଁ,
ପଥେ ପଥେ ବାଜୁଅଛୁ ଜୟ ଜୟ ଶଙ୍ଖ
ପ୍ରକୃତିର ଗ୍ରୀବପରେ ବିଜ୍ଞାନର ଉଗ୍ର ଅଭିମାନ
ବିଜୟର ଧ୍ୱଜା ତୋଳି ମେଲିଅଛୁ
ମହା ଅଭିଯାନ ।
ମନୁର ସନ୍ତାନ ଏଇ ଆଜର ଦାୟାଦ,
ଯୁକ୍ତିକରେ ମାଗୁନାହିଁ ସ୍ୱର୍ଗ ଆଶୀର୍ବାଦ,
ମାଗୁନାହିଁ ଚନ୍ଦ୍ର ଜ୍ୟୋତ୍ସ୍ନା,
ମାଗୁନାହିଁ ଇନ୍ଦ୍ର-ମେଘ-ବାଣ,
ମୁକ୍ତ ସମୀରଣ ପଦେ
ଆବେଦନ ଦେଉନାହିଁ ଢାଳି ।
ଜୟଯାତ୍ରା କରୁଚି ସେ ଦୂର ଚନ୍ଦ୍ରବାଲେ
ସ୍ପୁଟ୍‌ନିକ୍ ପଠାଉଛୁ ଦିଗ୍‌ବିଦିକ୍
ଦୂର ଅନ୍ତରାଳେ
ନୂଆ ଉପନିବେଶର ଆବିଷ୍କାର ଆଶେ,
ଅନନ୍ତ ଉଲ୍ଲାସେ ।
ବିଦ୍ୟୁତ୍-ଆଲୋକ-ଶିଖା ଜାଳୁଛୁ ବହୁତ
ତଥାପି କାହିଁକି ପୁଣି
ଅନ୍ଧକାର ଏତେ ଘନୀଭୂତ ?
ଦିଗେ ଦିଗେ ପଠାଉଚି ଶାନ୍ତିର କପୋତ,
ଉଦ୍‌ବେଳି ଉଠୁଚି କିଆଁ
ପଥେ ପଥେ ଅଶାନ୍ତିର ଖର ଅଗ୍ନିସ୍ରୋତ !
କାହିଁକି ବଢ଼ୁଚି ତେବେ
ଅଭାବର ଦୈନ୍ୟର ବିପାକ ?
ଘରେ ଘରେ ପ୍ରାଣେ ପ୍ରାଣେ
ଉଠୁଅଛୁ ହା' ଅନ୍ନର ଡାକ
ସୁବିପୁଳ ବିଜୟର ଦୃପ୍ତ ଉନ୍ମାଦନା
ମର୍ମେ ମର୍ମେ ତୋଳୁଅଛୁ ନିରୁକ୍ତ ବେଦନା ।

ଅୟି ପୃଥ୍ୱୀ, ଅଭ୍ର ଥରେ କାମଧେନୁ ହୁଅ ଆଜ ତୁମେ,
ବୁଭୁକ୍ଷାର ଦହନେ କ ହରାଇବୁ ପ୍ରାଣ
ଆମେ ସବୁ ମନୁର ସନ୍ତାନ,
ତୁମର ଏ ସ୍ନେହାଞ୍ଚିତ ଭୂମେ ?
ଅୟି ପୃଥ୍ୱୀ,
ଆଉ ଥରେ କାମଧେନୁ ହୁଅ ଆଜ ତୁମେ ।

□□□

ଡକ୍ଟର କୁଞ୍ଜବିହାରୀ ଦାଶ

## ଯନ୍ତ୍ରନଗର

ନୁହେଁ ଏ ତ କୋଣାର୍କ ବା ତାଜ୍
ନୁହେଁ ଏ ତ କୃଷକ କୁଟୀର
ନୁହେଁ ଏ ତ କ୍ଲାନ୍ତ ପଣଜନ ବସୁଧା ମାଟିର;
ନୁହେଁ ଏ ତ ଅତୀତ ଗୌରବ
ଆଗାମୀ ସପନ
ବର୍ବର ଯୁଗର ଏକ କୁତ୍ସିତ କାହାଣୀ
ଜମାଟ ସହସ୍ର ଅଶ୍ରୁକଣା
ଛୁଡ଼ା ଏଥି ହୋଇଛୁ କର୍ମାଇଁ ?
କ୍ଷମତାର ଶେଷ ଅସ୍ତ୍ରବଳ ନଡ଼ାଇଦେବାକୁ କେହୁ ନାହିଁ ?
ଅନ୍ଧକାର ଯୁଗର ନିଶାଣ ଉଡ଼ାଇଦେବାକୁ ନାହିଁ ବଳ ?
ଶୁଣିଛୁ ତ ଏଇ ପଥେ ଧାଇଁଥିଲ ଝଡ଼
ଗାଇ ଅଗ୍ନିଗାନ
ନରମୁଣ୍ଡମାଳା ଗିଳି ଛୁଡ଼ା କର୍ମା ଏଇ କାପାଳିକ
ଅଧିକ ଦେବାକୁ ଅପମାନ
ଜାଗ୍ରତ ଏ ଶତାବ୍ଦୀରେ ?
ଭାଙ୍ଗି ନାହିଁ ପେଷିତର ଉତ୍ତପ୍ତ ନିଃଶ୍ୱାସେ
ଖସି ଏ ଦାଇନ୍ ଆଖି ନୀରେ ?

କଙ୍କାଳକୁ କଙ୍କରେ ମିଶାଇ
ପଙ୍କ କରି ଲିପିଛୁ ପ୍ରାସାଦେ
ସ୍ୱେଦକୁ କରିଛୁ ଅଶ୍ରୁ
ଅଶ୍ରୁକୁ କରିଛୁ ରକ୍ତଧାର
ସୁଖ ଶାନ୍ତି ମଣ୍ଡପରେ ଗଢାଇଦେଇଛୁ ହାହାକାର ।
ଅତ୍ୟାଚାର ଅନ୍ଧକାରେ ଢାଳିଛୁ ଆଶିଷ
ଅଶ୍ରୁ ଆଉ ବିଷ ।
ଯନ୍ତ୍ରଣାରେ କରିବା ଚିତ୍କାର
ନାହିଁ ଅଧିକାର ।

ହରିଛୁ ଯେ ସହସ୍ର ଜୀବନ, ସୃଜିଛୁ ଉତ୍ପାତ
ରେ ତୋଫାନ, ପାଷାଣେ ପାଷାଣେ
ଦେଖ ହସେ ସେ ଇସ୍ପାତ ହାତ ।
ଜଳିଉଠେ ସେଇ ରକ୍ତ ଆଖି କଳାର ମହଲେ
ବନ୍ଧୁକର ଗୁଳି ଦମ ସେ ବୁକୁ ସ୍ପନ୍ଦନ
ବୁଲେ ଏ ଜଙ୍ଗଲେ ।

ଭଣ୍ଡ ତାର ଗର୍ଜିଉଠେ ଏବେ ନକାଶନେ—
ରହ, ରହ ପାଜି
"ବେଠି ନ ଦେବାର ମଜା ଛଡ଼ାଇଦେଉଛୁ ମୁହିଁ ଆଜି ।
"କେ ଅଛରେ ଆଗ ଲୋ ସନ୍ଧରେ ମାରଯାଅ କଣ୍ଟା
"ଶୁଣି ଏ ଲୋଠିର ଡାକ ଦେଇନାହିଁ ଭେଟି
"ବୃଦ୍ଧମାଡ଼େ ଭାଙ୍ଗିଦିଅ ଅଣ୍ଟା ।"
"ତୁମ୍ଭଙ୍କ ସାମନାରେ ଇଏ ଗଲା ଛତା ଟାଣି
"ଗୋଟି ଗୋଟି ଓପାଡ଼ ତା ଦାନ୍ତ,"
"ତୁମ୍ଭଙ୍କ ବିରୁଦ୍ଧେ ଇଏ ହେଉଥିଲା କଥା
"ମଡ଼ାଇଦିଅରେ ତାକୁ ଗାଡ଼ ।"
"ଖଜଣା ଦେବାକୁ ଏଇ କରୁଥିଲା ମନା
"ପଟଡ଼ାଶୀକ ତାର
"ବାଘ ଆଗେ ଫିଙ୍ଗିଦିଅ
"ନରୁବା କାନ୍ଥରେ ରଖି ଦିଅ ପଲସ୍ତରା ।"

"ମାଗଣ ଦେଉନ ଇଏ
"ଲଗାଅ ଗୋଇଠା ବଧା, ବଜାଅ ନାଗରା।"

ପିଶାଚର ସହସ୍ର ଆଦେଶ
ମୂର୍ତ୍ତିମାନ ଯନ୍ତନଗର
ପ୍ରଳୟ କମାଣ ସମ ବକ୍ଷେ ଲକ୍ଷ୍ୟ ରଖିଛୁ ତୋହର
ମତ୍ତ ହାତୀ ସମ ନର୍ବିକାରେ
ମନ୍ଥି ଏ ଦେଇଛୁ ଲକ୍ଷ ଗ୍ରାମ
ଏ ଏକ କଙ୍କାଳସ୍ତୂପ
ଗଢ଼ାଇଦେଇଛୁ ଝଡ଼ଗ୍ରାମ ।
ଏ ଏକ ଆଗ୍ନେୟଗିରି ଟେକିଅଛୁ ଶିର
ଏ ଏକ ପାଷାଣ ହାତ
ମଣିଷ ଧମନୀ ଶିରା ଶୂନ୍ୟ କରି
ଦୁହିଁଛୁ ରୁଧିର ।

ଇଏ ଏକ ଯାଦୁଘର
ଟେକିଅଛୁ ଭୂକମ୍ପର ନାଚ
ସମସ୍ତରେ ଯିବାଲାଗି ଯମଦୂତ ଗଢ଼ୁଛୁ ପାହାଚ ।
ରଣଭୂମି ବନାଶ ଲୀଳାରେ
ନାଚ ନାଚ ଯୁଦ୍ଧ ଏବେ ହୋଇଚ କବନ୍ଧ
ବାନ୍ଧିବାକୁ ସ୍ୱାଧୀନ ପ୍ରବାହ
ଆଲୋକର ଶତ୍ରୁ ଜଣେ ପାଢଅଛୁ ଛନ୍ଦ ।

ମରିବା ଆଗରୁ ନିଜେ ନିଜର ସମାଧି
ଯାଇଅଛୁ ଗଢ଼ି
ଲକ୍ଷ ପ୍ରାଣ ଜାଳି ଜାଳି
ନିଜେ ସେ ଯାଇଛୁ ଶେଷେ ପୋଡ଼ି ।

ଦୁନିଆକୁ ଦେଇଛୁ ସେ ମୁଠିଏ ପାଉଁଶ
ଏଇ ତାର ଦାନ
ତାହା ପରେ ଉଭାହୋଇ ନିଷ୍କେପିତ ଆରେ
ଗାଅ ଏ ଯୁଗର ଜୟଗାନ ।

ଗତ ଶତାବ୍ଦୀର ଅଭିଶାପ
ଏବେ ଯେତେବ ଚମ୍ବୁଇ ଆକାଶ
ଶତ ଶତ ଘଡନନଗର
ଚଦ୍ଦଗେ ଗର୍ବେ ଟେକୋଲେ ମଥା
ଲକ୍ଷକୋଟି ଫିଙ୍ଗି ଦେଇ ପାତାଳ ଗହ୍ୱରେ
କହ କେବେରେ କଙ୍କାଳ ହେବ ତା ବିନାଶ ?

□□□

ମନମୋହନ ମିଶ୍ର

## ନମସ୍କାର କର

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବନ୍ଧୁରକ
ମୋର ଏ କବିତା
ସଂସାରରେ କବି ବୋଲି, ବୋଲନ୍ତି ଯାହାକୁ
ସେ କବି ମୁଁ ନୁହେଁ
ମୋହର କଳ୍ପନା ସୀତା
ଜନ୍ମିଥିଲା ଏ ମାଟିର କଠୋର ଜଠରୁ
ଦୂରନ୍ତ ଜୀବନ-ପଥେ ଘନ ବନାନ୍ତରେ
ରକ୍ଷପୁଷ୍ଟ ଭୀମ କୋଲାହଳେ
ଜଟାଧାରୀ ବନବାସୀ ସନ୍ନ୍ୟାସୀର ପାଣି
ବରିଥିଲା ଆପେ ଜାଣି ଜାଣି ।
ସତ୍ୟ ଆଉ ପ୍ରେମ ଲାଗି ବାର ବାର
ଘେନିଥିଲି ଅନଳ ଶପଥ,
ଆଜଠାରୁ ବର୍ଷ ଏକଶତ,
ଯେଉଁଦିନ ନଥିଲା ନେତା, ନଥିଲା ଗୁରୁଣୀ
ସେଦିନ ମୁଁ ତା'ରେ ଜନ୍ମ ଦେଲି
ଶତ ଶତ ମାତାର କ୍ରନ୍ଦନେ,
ହିମାଳୟ ଶିଖରେ ବଦାଶ ତାରେ ବୁହାଇଲି ।

ଲକ୍ଷ୍ମୀବାଈଁ ଅସିର ଝଲସେ
ଗଢ଼ିଥିଲ ତାହାର ଲପନ
ସଜଫୁଷ୍ଠା କେତେ ମାଳକ
ହୃଦୟର ଉଦ୍ଧସ୍ତ ଚଳ
ଗଢ଼ିଥିଲୁ ତାର କଟିବାସ,
ଅଯୁତ କୃଷିବଳର ପେଶୀଳ ଧମନୀ
ଗୁନ୍ଥି ଥିଲ ବେଣୀ—
ଗଢ଼ିଥିଲ ବନ୍ଧନ ଦଉଡ଼ି
ସେ ଦଉଡ଼ି କଲ ମସୃଣ
ପ୍ରଥମ ପ୍ରେମିକା ମୁଖ ମଧୁର ସିଞ୍ଚନେ ।

ଆଜ ମୋତେ ଶୁଝିବାକୁ ହେବ
ଯାହାଠାରୁ ଯାହା ନେଇଥିଲ ।
ଶହେ ବର୍ଷ ତଳର ଏ ଋଣ
ବଢ଼ି ବଢ଼ି ହେଲ ଯେ ଦୁର୍ବହ !
ଭାଙ୍ଗିବାକୁ ହେବ ମୋତେ
ଅଶୋକବନର ଭୀମ ରାକ୍ଷସ ପ୍ରାଚୀର;
ଯୋଡ଼ିବାକୁ ହେବ
ମୁଗ୍ଧ ପ୍ରଣୟୀ ବୁକେ
ପ୍ରେମିକାର ମୁଦ୍ରିତ ନୟନ
ଗଢ଼ିବାକୁ ହେବ ମୋତେ ଅର୍ବୁଦ ଧମନୀ ।

କୋଟି କୋଟି ବାହୁ
ଚରାଚରେ ମାନବ ସ୍ୱାକ୍ଷର
ଜୀବନର ଦୃଢ଼ ଇସ୍ତାହାର
ମୋତେ ଆଜ ଲେଖିବାକୁ ହେବ ।

ମୋତେ ଆଜ ଲେଖିବାକୁ ହେବ
ତଟିନୀ ତରଙ୍ଗେ
ପ୍ରଭଞ୍ଜନେ ସୁଫଯତ
ଲଙ୍କାର ଲଞ୍ଛନ
ଗ୍ଲାନି-ଦଗ୍ଧ ବନ୍ଧୁର ହୃଦୟ
ସମତଳ ବୁଣିବାକୁ ହେବ ଆଲୋକ ବାହନ ।

ତୁମକୁ ମୁଁ ପୁରସ୍କାର ଦେଲି
ଆହେ ବନ୍ଧୁଗଣ,
ତୁମେ ହୁଅ କର୍କଶ କର୍କଶ
ଭୂତ ଭୂତତର
ପୁରୁଣା ବନ୍ଦୋବସ୍ତର ଜବାବ, ଫୋପାଡ଼
ଅମୃତସମ୍ଭବା ମୋର ମାଟିର ଦୁଲାଳୀ
ମୋ କଳ୍ପନା ସୀତା
ଜନନୀର ସ୍ତନ୍ୟପୀତ ଯନ୍ତ୍ରଣା ବିକଳ
(ତାରେ ଆଜ ଦେଲି ପୁରସ୍କାର)
ନମସ୍କାର କର
ଆହେ ବନ୍ଧୁଗଣ,
ତୁମକୁ ମୋର ଏ ଆଜ୍ଞା
ନମସ୍କାର କର ।

□□□

କୃଷ୍ଣଚନ୍ଦ୍ର ତ୍ରିପାଠୀ

## ମୁଁ

ମୋର ଜୀବନ ନୁହଇ ଆକାଶର ଗୋ ପାଣି-ଫୋଟକା
ମୁଁ ତ ଅସୀମ କାଳର କପାଳେ ଚିରନ୍ତନ ଚାନ୍ଦ ଗୋ,
ମୁହିଁ ଏତେ କାହିଁପାଇଁ ହେବ ଅତରଛ ଡାଟକା
ମୁଁ ଗୋ ମୋହନର କାମଦ୍ଧି ହସି ହସି କରୁଥିବ ଗୋ !
ମୁଁ ଗୋ ଚିର ସନାତନ ଶାଶ୍ୱତ ଅବିନାଶୀ ଗୋ
'ମୋର ଜୀବନ ଗୋ ଖାଲି ଜୀବନ, ଜୀବନ, ଜୀବନ;
ମୁଁ ଗୋ ମହାବିଶ୍ୱର ଆଲୋକେ ଉଠେ ବିଭାସି ଗୋ
ମୁଁ ଗୋ ମହାବିଶ୍ୱରେ ମୁକ୍ତ ମଧୁର ପାବନ ।
ମୋର ଚଉଦିଗେ ଖାଲି ଅମୃତ ଝର ଝରଇ
ମୁଁ ଗୋ କ୍ଷୁଦ୍ର ନୁହଇ ବିରାଟ, ଉଦାର, ମହାନ,

କୋଟି ଅମୃତ ଆଶା ବୁକୁ ତଳେ ମୋର ଭରଇ
ମୁଁ ଗୋ ଆନନ୍ଦ-ଜଳେ କରୁଥିବ ନିତ ସ୍ନାହାନ ।
ମୋର ଦୁଃଖ ବେଦନା ପୁଲକ ଗୋ ସବୁ ସମାନ
ମୁଁ ଗୋ ସବୁରେ ଦେଖିବ ଜୀବନ ମୋହନ ବିଳାସ,
ମୁଁ ଗୋ ମୋହର ଭିତରେ ଦେଖିବି ବିଶ୍ୱ ବିର୍ତ୍ତାନ
ମୋର ନାହିଁ ନାହିଁ ନାହିଁ ଦାରୁଣ ଦୁଃଖ ପରାସ ।
ମୁଁ ଗୋ ସତ୍ୟ, ଚିର ସୁନ୍ଦର, ଶିବ, ଶୁଦ୍ଧ,
ମୁଁ ଗୋ ସକଳର ଲାଗି ଜାଗିଚି ଏ ମହା ଭୁବନେ,
ମୁଁ ଗୋ ସବୁର ଭିତରେ ହୋଇଉଠେ ଉଦ୍‌ବୁଦ୍ଧ
ମୁଁ ଗୋ କଲ୍ଲୋଳି ଉଠେ ବିଶ୍ୱ ଆକାଶ ପବନେ ।



ଗୋପାଳଚନ୍ଦ୍ର ମିଶ୍ର

## ପୂଜାଚଠି

ଅନେକ ରାତ୍ରି ବନ୍ଧୁ ଦିନ ପରେ ଆଜ,
କେତେ ସେ ବରଷ ମନେ ପଡ଼ୁନାହିଁ ତାହା,
ଲେଖିଥିଲ ପୂଜାଚଠି, କେବେ କେଉଁ ପରି,
ମନେ ପଡ଼େ ନାହିଁ ତାହା ଏତେ ବ୍ୟବଧାନ ପରେ,
ଫୁଲ ଫୁଟି ଫୁଲ ଝଡ଼ି ଯିବା ପରି ସତେ,
କେତେ ଯେ ଶେଫାଳୀ ସୁନୀଳ ଅଶିଣ ପଥେ,
ସେ କଥା ପଡ଼ୁନ ମନେ ଯାହା ଅନ୍ତରର
ତା' ପାଇଁ ପରାଣ ଯାହା ବେଦନାମୁଖର,
ଆଜ ମୁଁ ଲେଖୁଛୁ ତେଣୁ ତୁମପାଇଁ ସାଥୀ,
ଆଜ ଏ ସ୍ନିଗ୍ଧ ପୂଜା-ପାର୍ବଣ ବେଳେ,
କଇଁଫୁଲ ଯେବେ ରକ୍ତ ନଗାଡ଼ ଡାକେ,
ବେଦନା ଜାଗଇ ବନ-ବିହଗର ବୁକେ
ମୁକୁଳେ ମୁକୁଳେ ଆକୁଳ ପରାଣ ଲାଗେ
ଚକୋର ଆବେଗ ଜୋଛନା ପରଶ ମାଗେ
ଅପରାଜିତାର ସୀମା ଛୁଇଁ ଛୁଇଁ ବାରେ
କିଏ ସେ ଡାକଇ ଏଣ୍ଡୁ ନଦୀ, ଏଣ୍ଡୁ ପାରେ...

## ଅନନ୍ତ

ହେ ମୋର ବନ୍ଧୁ, କୈଶୋର ବେଳ ସାଥୀ,
ବନ୍ଧୁବନ୍ଧନ ଧରି ତୁମ ସାଥେ ଦେଖାନାହିଁ,
ଜୀବନଯୁଦ୍ଧେ ସଂଗ୍ରାମ କରି କରି
ତୁହେଁ କେତେଦୂରେ ଯାଇଅଛେ ଅପସରି !
ଜୀବନ ପାଇଁକି ସଂଗ୍ରାମ କରିବାରେ
କିଏ କାରେ ସତେ ମନେରଖେ ଏଇଠାରେ ?
ସଂସାର ଯାହା ଖାଲି ହଳାହଳମୟ,
ସାର ଏ ଜୀବନେ ବିଫଳତା ପରାଜୟ,
ମନେପଡ଼େ ହାସ୍ୟ ସେହି ଦୂର ଅତୀତରେ,
ତୁମର ସେ ପ୍ରିୟ ପଲ୍ଲୀ କୁଟୀର ତଳେ
ଗୋବରଲିପା ସେ ନୂଆଣିଆଁ ଗୃହଘରେ
ଶିଶୁ ବୟସର ସ୍ନେହ ଓ ସୋହାଗ ଭରେ
ବିତୁଥିଲା ସତେ ଆମ କୈଶୋର ବେଳା
ଦାରିଦ୍ର୍ୟଭରା ଜୀବନର ଲୀଳାଖେଳା
ଖେଳ-ଉତ୍ସାହରେ କେତେ ଦିନ କେତେ ରାତି,
ବିତାଇ ଦେଇଛେ ମନେପଡ଼ୁଛି କି ସାଥୀ ??
ମନେପଡ଼େ ଆଜି, ଝାଇଛେ ପାଚିଲା ତାଳ
ଜାମୁକୋଳି ତୋଳି ଭାଙ୍ଗିଛୁ ଗଛର ଡାଳ !
ସୁନାରି ଲତାରୁ ଗୁଞ୍ଜର ଧରି ଆଣି
ଧାନଫୁଲଭରା ବିଲରୁ ଶୁଖାଇ ପାଣି—
ମାଛ ଧରିଥିଲେ, ମନେପଡ଼ୁଅଛି ଯେବେ
ଏ ଜୀବନେ ସେହି ଖେଳ କି ଆସିବ କେବେ ??
ବାଲିଛତ୍ରୁ ସାଥେ କନଶିରି ଶାଗ ତୋଳି
ଦେହ ଓ ମନରେ ବରଷା ସୋହାଗ ବୋଳି
ଗୀତ ଗାଇ ଗାଇ ଘରକୁ ଫେରିବାବେଳେ
ଜମୁସ ବଧୂର କଣୋର ସାଥୀର ମେଳେ
ଆଉ ସେ ସ୍ମୃତି ଫେରିବ କି ସାଥୀ କେବେ ??
ଆଜ ଏ ଜୀବନ ଲେଡ଼ୁଅଛି ତାହା ଯେବେ
ଗାଆଁ ଅରପାଶ ବଉଳ ଗଛର ଦେହେ
ସୁଉ-ସୁଉ କରି ସମୀରଣ ଯେବେ ବହେ

ଲଗିଯାଉଥିଲା ଆମ ଦେହେଁ ଶିହରଣ
ମାଲତୀ ଫୁଲର ସଉରଭେ ରଙ୍ଗଭରା
କହ ତ ବନ୍ଧୁ, ଆଉ ଏ ଜୀବନେ ଡେବେ
ଫେରିବ ନାହିଁ କି ଆଉ ସେ ଅତୀତ କେବେ.??

**ରାଧାନାଥ,**

ମନେଅଛୁ, ଆମେ ପଢ଼ୁଥିଲେ ପାଠ ପରା
ଆମ୍ର ବକୁଳ ବଗାନେ ଆତ୍ମହରା ।
ସରଳ ଜୀବନ ଆହୁରି ସରଳ ଚିନ୍ତା,
ପଲ୍ଲୀ ମୁକୁଳେ ଭ୍ରମର ବଜାଏ ବୀଣା ।
ତୁମେ ହୋଇଥିଲ ଗ୍ରନ୍ଥାଗାରର ପରା,
ତୁମକୁ ସେଦିନ ଭଲଲାଗୁଥିଲ ଧରା ।
ଛାତ୍ର-ଜୀବର ମଧୁମୟୀ ବସୁମତୀ,
ଜାଣିପାରିଥିଲ ସରଳ ତରୁଣ ମତି ।
ସ୍ୱପ୍ନଲଗନୁ ଉଠି ପ୍ରଭାତନ କାହିଁ,
ଆଗେ ଧାଉଁଥିଲ ଫୁଲ ସଂଗ୍ରହ ପାଇଁ ।
ଗଙ୍ଗଶିଉଳୀ ବକୁଳ ମାଲତୀ ଆଣେ,
ନାଗେଶ୍ୱର ଅବା ଯେଉଁ ଫୁଲ ଯେଉଁ ମାସେ,
ବିଦ୍ୟାଳୟ କି ମନ୍ଦିର ପରିବେଶେ
ସେହି ସେ ପଲ୍ଲୀ ତଟିନୀ ଉତ୍କଳା ଦେଶେ
ପିକ ଗାଉଥିଲ ପ୍ରଭାତେ ଆଦ୍ୟ ଗୀତ,
ସତେ କି ସରଳ ଶିଶୁ ଜୀବନର ପ୍ରୀତି !
ଆଖିପିଛୁଳାକେ ସକଳ କୃତ୍ୟ ସାରି,
ବିଦ୍ୟାସାଧନେ ସକଳ ବ୍ରହ୍ମଚାରୀ,
ଛାତ୍ରାବାସର ସରଳ ଜୀବନଧାରା
କେତେ ଯତନେ ବନ୍ଦୀ କରିଲା ପରା,
ଗୁରୁକୁଳ ପ୍ରଥା କରିଲା ଉଦ୍‌ବୋଧନ,
ବିଦ୍ୟାପ୍ରୟାସୀ ଅମୃତ ଜାଗରଣ,
ଛାତ୍ରାବାସର ସରଳ ଜୀବନଧାରା,
ନିମ ଚପଲ ସପନ ଛନ୍ଦଭରା,

ନିଜ ହାତେ ନିଜ କାମ କରିବାର ପ୍ରୀତି,
ମନଫୁଲୁଣିଆ ଚପଳ ବୟସ ଗୀତି,
ତଟିନୀ ପୁଅଁରେ ଖେଳିବାର ଯେତେ ମୋହ
ଆମ୍ର ମୁକୁଳେ ସଉରଭ ମହମହ
ଝଡ଼ିଯାଇଅଛି ସେଦିନ ମୁକୁଳ ସିନା
ଜୀବନ ରହିଛି ସୁଖ ଓ ସୋହାଗ ବିନା
ଘୃଣଦିଗେ ଖାଲି ବିଫଳତା ହଳାହଳ
ଈର୍ଷା-ପୀଡ଼ିତ 'ଏ ସାରା ଧରଣୀ ତଳ
ଘୃଣ ଦିଗେ ଖାଲି ସ୍ୱାର୍ଥର ବହ୍ନିଶିଖା
ନିଦାଘ ରୁଦ୍ର ପିଙ୍ଗଳ ମରୀଚିକା !!

ଗଦାଧର,

ତୁମେ ଆଜି ଦୂରେ କେତେ ଦୂରେ ଗ୍ରାମପଥେ
ମନେ କି ପଡ଼ଇ ଏତେ ଦିନ ପରେ ସତେ !
ଘର ବାଡ଼ିପଟେ ପିଜୁଳି ଗଛର ତଳେ
ଶିଶୁ ବୟସର ଅଗଣିତ ସାଥୀମେଳେ
ପାଠପଢ଼ା ସାରି ଗଛରୁ ପିଜୁଳି ତୋଳି
ମୁଖେ ମୁଖେ ଘୂରୁ କୁସୁମପରାଗ ବୋଳି
ଭୁଲୁଥିଲେ ଆମେ ଆଖି କିଆଶରେ କାହିଁ
ଆଜିର ଜୀବନେ ମିଳିବ କି ତାହା ନାହିଁ
ଅଶିଣ ମାସର ନେଳି ନେଳି ଧାନବିଲ
ସକାଳୁ ସଞ୍ଜେ ଉଡ଼ଇ ଶଙ୍ଖଚିଲ
ନୀଳପାଣି ଧାରେ ଦେଖାଇ ଆପଣା ମୁହଁ
ଚପଳ ମୀନରେ ଫୁଲିଉଠେ ଜଳସୁଅ
ବିଲ ମଥାନରେ ହିଡ଼ ପରେ ବସି ଧ୍ୟାନେ
ବକ ଯେ କାହାକୁ ଝୁରୁଥାଏ ମନେ ମନେ
ଫୁଟା କଇଁଫୁଲ ଧୋବ-ଫରଫର ହସ
ତୁମ ଆମ ଗାଆଁ ହସୁଥାଏ ବାରମାସ ।
ବରକୋଳି ଗଛେ ବାଦୁଡ଼ି ସାଧଇ ଦାଉ
ସେ କଥା ଆଜି କି ମନେପଡ଼ୁଅଛି ଆଉ

•

ଜାତୀୟ ଜୀବନ ସ୍ୱରାଜ୍ୟ ଆହ୍ୱାନରେ
ସତେ କି ମନ୍ତ୍ର ଶୁଭୁଥିଲା ଘରେ ଘରେ
ଗାଆଁର ସେପାଖ ମେଳଣ ପଡ଼ିଆ ପରେ,
ପବନେ ପବନେ ଜାତୀୟ ପତାକା ଥରେ,
ଶୁଣାଯାଉଥିଲା ଦେଶ-ବନ୍ଦନା ଗୀତ
ସଭା-ସମିତିରେ କାଳ ଯାଉଥିଲା ବିତି ।
ଆଜି ଏ ଦେଶରେ ଏତେ ଦୁର୍ଗତି କାହିଁ ?
ଆଜି କି ଦେଶରେ ମଣିଷତା ସତେ ନାହିଁ !!
କରାଳ ବନ୍ୟା ବାତ୍ୟାରେ ପ୍ରପୀଡ଼ିତ
ସର୍ବନାଶ କି ପଲ୍ଲୀରେ ଉପନୀତ ।
ଘରେ ଘରେ ଖାଲି ଶୋକ ଉପବାସ ଦିନ
ଜୀବନ ହେଲାଣି ଶୁଷ୍କ ସପନ ବିନା ।
ସବୁ ପ୍ରତାରଣା ଛଳନା କପଟ ଖାଲି
ଏ ମରୁପଥରେ ଆଉ କି ପାରିବା ଚାଲି ?
ସବୁଠାରେ ଆଜି ବଂଚନା ହୁଏ ସାର
ନାହିଁ ସେ ପୂର୍ବ ସହଜ ପରିବାର ।
ଯନ୍ତ୍ର-ଯୁଗର ଧ୍ୱଂସର ଘେର ତଳେ
ମଣିଷ ପାଇଁ କି ଧ୍ୱଂସର ଶିଖା ଜଳେ ।
କୀଟ ସମ ତହିଁ ଜଳପୋଡ଼ି ଦିବାପାଇଁ
ଆଜି ଏ ଦେଶରେ ମଣିଷତା ଆଉ ନାହିଁ ।
ଆଜି ଏହି ପୂଜା-ପାର୍ବଣ ଅବସରେ
ଅନେକ ଯାତନା ବ୍ୟଥାର ଅଶ୍ରୁ ଝରେ ।
ମଣିଷ ଦୁଃଖ ତଳେହେଲେ ସୀମା ନାହିଁ
ବନ୍ୟା, ମରୁଡ଼ି, ପଥ କାହିଁ, ପଥ କାହିଁ ??
ଭିକାରିର ଥାଳ, ଜନତାର ପେଟ ଖାଲି
ଅଜ ଦେଶ ସତେ କୁଆଡ଼େ ଯାଉଛୁ ଚାଲି ?
ତେଲରେ ଅଗରା, ଚାଉଳରେ ଗୋଡ଼ମାଟି
ମିଶାଇ ମିଶାଇ ବୋଲଉ ସ୍ୱାଧୀନ ଜାତି ।
ତେଣୁ ମଣିଷର ଚରମ ମୁକ୍ତି କାହିଁ
ଆକାଶ ସେପରି ଏଇ କଥା ବାହୁନଇ !

କାହିଁ ସେ ବୃକ୍ଷ ? କାହିଁ ସେ ସାଧନା ବାଣୀ ?
ଚରମ ମୃତ୍ୟୁ ପାଉଥିଲି ଯେହ୍ନୁ ଜାଣି ।

ଶେଷକଥା,

କହ ସାଥୀମାନେ, କ କଥା ଲେଖିବି ଆଜ ?
ଏହ୍ନ ଅବସରେ ଲେଖନୀ ନୀରବ ରହୁ ।
ଶରବିଦ୍ଧ ମୁଁ ହେଉଥାଏ ପ୍ରତି କ୍ଷଣେ
ମୋ ଆଗେ ଭୂମିକା କରଗଲେ ଜଣେ ଜଣେ ।
ଝରାଫୁଲ ପରି ଝରିଯିବ ମୁହିଁ ସିନା
ମୋ କଥା କଏ ସେ ନ ଜାଣିଲେ ମୋହ ବିନା ।
ଏତକ ଲେଖି ମୁଁ ଲେଖାରେ ଟାଣୁଚି ଗାର
ଏ ମୋର କବିତା, ଆଗାମୀକୁ ଉପହାର ।

□□□

ବିନୋଦଚନ୍ଦ୍ର ନାୟକ

# ଏ ପୃଥିବୀ

ଫିଙ୍ଗି ଦୂରେ ମାଟିର ନର୍ମୋକ
ପ୍ରଜାପତି ସ୍ୱପ୍ନ ନେଇ, ଏକଦା ମୁଁ ବିସ୍ତାରିଲି ଡେଣା
ଅନନ୍ତ ନୀଳ ଉତ୍ସୁକ
ନେଇ ଭୁଲିଗଲି ଆହା ଜୀବନସଂଗ୍ରାମେ, ମୁଁ ବି ଏକ ସେନା ।

ନଦୀ ବନଭୂମି ଗୃହ ଶୃଙ୍ଗାରବନ୍ତର
ଏ ଧରତ୍ରୀ ସୁଜଳା, ସୁଫଳା
ସ୍ମିତ ଚନ୍ଦ୍ରର ସମ ଅସ୍ତାଚଳେ
ଅପସରିଗଲା ।

ଭାବିଲି ମୁଁ ଫିଙ୍ଗିଦେଲି ବିଷର ପିଆଲା;
ଉନ୍ମତ୍ତ ପିଆସେ,
ଅସ୍ୱୀକାର କଲି ଏ ମାଟିରେ
କେଉଁ ମଧୁ ଆଶ୍ୱାସେ ?

ବିଦେଶିନୀ ବାନ୍ଧବୀର ସମ
ସମ୍ମତିର କଟାକ୍ଷ ପ୍ରସରି;
ନୀଳିମା ଆଲିଙ୍ଗି ନେଲା
ଓଷ୍ଠପୁଟେ ସୁରାପାତ୍ର ଧରି ।

ମୁଗନାଭି ପ୍ରେମ ନେଇ
ତାହା ପରେ ଗୁଲିଲି ଚକିତେ
ମେଦୁର ମେଘ ତୋରଣ ଲଙ୍ଘି କେଉଁ ଦୂରର ଇଙ୍ଗିତେ
ତାରକାରେ ତାରକାରେ
ଶିଖାର ପ୍ରକାଶେ ଅନ୍ଧ ପତଙ୍ଗର ସମ
ଆକାଶର ନୀଳେ ନୀଳେ ରଚି ସନ୍ତରଣ ।
ଗାଇଲି ମୁଁ ସ୍ୱ ଅର୍ଥୀର ଗାନ
ରୋମନ୍ଥନ କରି ଖାଲି ଇଚ୍ଛା ଅଭିମାନ
ସେ ସଙ୍ଗୀତ-ମୂର୍ଚ୍ଛନାରେ ଅନୁଭବ କଲି ଅକସ୍ମାତ
ସମବେଦନା ବିହୁନେ ଛନ୍ଦ ତା'ର
ଅନ୍ତରେ ମୋ ପ୍ରହାରେ ଆଘାତ ।

ସହସା ଦେଖିଲି ଅଗ୍ରେ ଧରିତ୍ରୀର ମଶୀଚକା ଗ୍ରୁଷ୍ଟା
ସ୍ନିଗଧ ନୀରବେଣୀଘେରା ପ୍ରାନ୍ତରର ମାସ୍ଥା,
କେତେ କମ୍ପିତ ଓଷ୍ଠର ସ୍ପର୍ଶ, କେତେ ବାହୁ ଆଲିଙ୍ଗନ,
କେତେ ନୀବିବନ୍ଧ ଉନ୍ମୋଚନ,
ଗୁଣ୍ଠନ ତଳର କେତେ ଅଶ୍ରୁ ଅଭିମାନ
ତନୁ ତନୁ ଘାତେ ବେପଥୁର କମ୍ପମାନ ।
ଦେଖିଲି ମୁଁ ମିଥୁନର ଛବି
ଗୁଚ୍ଛ ଗୁଚ୍ଛ ଶସ୍ୟ ଆଉ ଶଙ୍ଖ ଶ୍ୱେତ ମଧୁର ମାନବୀ ।
ସ୍ୱେଦ ଦେଇ, ରକ୍ତ ଦେଇ ଗୃହେ ତା'ର ଆଣେଇ ମାନବ
ନୂତନ ପ୍ରାଣର କଳରବ

ତାର ମଧ୍ୟଦେଇ ରଚେ । ଛୁଟ୍ରେ କର ଆଁଶ ଓ ଅସ୍ପୃଷ
ସେ ଆଣେ ପ୍ରାଣର ସନ୍ତୋଷ ।
ଇଚ୍ଛାମତୀ ନଦୀଟିର ପାଶେ
ଦେଖିଲ ଯେ ବାଳାକାଟି ଭଲପାଇ ଆନ କା'ର ବଧୂ ହୋଇଗଲ
ମୋ ପୃଥିବୀ ସେ ହୋଇଣ ଆସେ ।
ଆକାଶର ଯେତେ ନୀଳ ଯେତେ ନଶା ଦୂର ସଙ୍କେତର
ଆଚମ୍ବିତେ ହେଲ ଦୂରତର
ମୃତ୍ତିକାର ବିଷପାତ୍ର ଦୁଇହାତେ ତୋଳ
ଆକଣ୍ଠ ତୃଷାରେ ପାନକଲ ।
ଅଗ୍ନିସ୍ନାନେ ପତଙ୍ଗର ସମ, ହୋଇ ଭଗ୍ନଡ଼େଣା
କ୍ଷତ ରକ୍ତ ସ୍ନେହା
ହୋଇ, ପଡ଼ିଗଲ ନବଲୋକେ ।
ଚେତନାର ନୂତନ ଯଘାତେ
ଦେଖିଲ ବହ୍ନିଶ୍ରୀ ବାହୁ ଘେର ଏ ଧରିତ୍ରୀ
ବଧୂସମ ଭିଡ଼ିଅଛୁ ମୋତେ ।

□ □ □

ଜ୍ଞାନନ୍ଦ ବର୍ମା

# ବାମପଥ

ଖ୍ରିବ-ତାନ୍ତ୍ରିକ ଚରଣ୍ଡନ ଦୁନଆର
ବର୍ଣନେଇଥିଲ ବାମାର୍ଗିନର ପଥ
ଆଜ ନେଇଅଛୁ, ଖ୍ରିବ-ଯାନ୍ତ୍ରିକ ସଖି
ତମର ସଙ୍ଗତେ ବାମପଥେ ଗୃଳ ରଥ ।

କନ୍ତୁ ସେ ପଥେ ଫୁଲ ଆଉ ନାହିଁ ଫୁଟେ,
ପ୍ରଣୟ କାବ୍ୟ, ସୁଗ୍ର ଆଉ ନାହିଁ ଝରେ,
ଯାତ୍ରାର ଜାଲେ ଯୌବନ ମଶ୍ଅଛୁ,
କଙ୍କାଳ ତଳେ ଜବା ଅଭିସାର କରେ ।

ଆଗରେ ପଡ଼ିଛୁ ଦୂରବନ୍ଧୁର ପଂଥ
ସ୍କନ୍ଧେ ପଡ଼ିଛି ତମର କ୍ଳାନ୍ତ ତନୁ,
ବାମପଥ ଧଏ ଖାଲି ତାଣ୍ଡବ ଡାକ
ଧ୍ୱଂସର ପରେ ସୃଷ୍ଟି ରହିଛି ଯେଣୁ ।

ହୁଏତ ତମର ଶବଟାକୁ ତଳେ ରଖି
ଅସ୍ଥିରୁ କହି ମାଂସ ନଏ ତ ଗୃଧି,
କନୁ ତାକୁ ସେ ଇତିହାସ ପାଇଁ ରଖେ
ଯାଉଅଛି ସେ ଯେ ହାତଠାରି ମତେ ଡାକି ।

ହୁଏତ ତମକୁ ବଞ୍ଚାଇବାର ହେଲେ
ବାମପଥ ଛାଡ଼ି ଦକ୍ଷିଣେ ଯାଇପାରେ,
ତମର ଚଳିତ ଯୌବନ ପାଲଟାଇ
ଜୀବନକୁ ପୁଣି ସମ୍ଭୋଗ ଦେଇପାରେ ।

କହ ସଖି କହ, ଲକ୍ଷ କ୍ଷୁଧାର ପାଣେ,
କେସନ ରଚିବ ଗୃହୁ ଅନ୍ନର ଭୋଜ,
ଆମ୍ଭାରେ ସେ କି ସନ୍ତୋଷ ଦେବ କହ,
ସଂଗ୍ରାମେ କାହିଁ ଢାଳିବ ନୂତନ ତେଜ ।

ସଂଗ୍ରାମେ ତହୁଁ ବରନେଇଅଛି ପଥ °
ବାମପଥେ ରଥ-ଅଶ୍ୱ ଯାଇଛି ଗୁଳି
ଦକ୍ଷିଣେ ଯେତେ ରକ୍ତ-ଶୋଷକଦଳ
ସେ ସକଳେ ଦେବ ହତ୍ୟାର ଶର ଗୁଳି ।

ଶବରୁ ତଥାପି ତମେ ଶୀତ୍କାର ଛାଡ଼ି
ହତ୍ୟାରେ କାହିଁ ଜୀବନ ସବକାଶ ?
ପ୍ରତିହିଂସା ଏ ମୋର ଭାବନାହିଁ ସଖି,
ପ୍ରତିକାର କହ ଏହାଠାରୁ ଅଛି କସ !

ଶବ-ଦେହ ଧରି ଦକ୍ଷିଣେ ତମେ ଯାଅ
ତନୁ ଲଭି ପାଇଁ ରକ୍ତ ମାଗିବ ଦ୍ୱାରେ,
ଯଦି କେହି ଦେବ, ଅସ୍ତ୍ର ଛାଡ଼ିବ ସତ,
ଦୀକ୍ଷା କରିବ ଜୀବନରେ·ନବ ବ୍ରତ ।

ମାତ୍ର ଏହା ଯେ ସତ୍ୟ ଓ ପ୍ରମାଣିତ
ତମ ହାତେ କେହ୍ନ ଟେକବାର ଆଗୁ ଦାନ,
ଅସ୍ଥିରେ ତବ ଯଦି କିଛୁ ରହିଥାଏ
ତାକୁ ନେବା ପାଇଁ କରିବନ ଦ୍ୱିଧାଙ୍କନ ।

ସେତକ ବି ନେଇ ଦେବ କି ସେ ନାହିଁ ଦାନ,
ଦାନ ଆଉ କାହିଁ ମୂଲ୍ୟ ଯେ ହୋଇଯାଏ,
ମୂଲ୍ୟ ପାଉଥିଲେ ମଣିଷର ଲକ୍ଷ, ଲକ୍ଷ
କଙ୍କାଳେ ଖାଲି ସୃଷ୍ଟି କପାଇଁ ହୁଏ ।

ପଥର ପ୍ରଶ୍ନ ଆଉ ନାହିଁ ସଖି, ବାକି
ତମର ଶବର ଗଳିତ ଗନ୍ଧ ଆଜି,
ଅନ୍ଧ କରିଛି ଗୋଟିଏ ସରଣୀ ପରେ,
ଦୂରେ ଉଠିଅଛି, ସଂଗ୍ରାମ ବେଣୁ ବାଜି ।

ତମର ଗଳିତ ଗନ୍ଧ ଏ ଝରୁଥାଉ
ସ୍କନ୍ଧେ ତମର ଶବ ରହିଥାଉ ପଡ଼ି,
ଅନାଦି ଦହନେ ତାଣ୍ଡବ ତାଳ ପାଇଁ
ମୋର ଗତି ସଦା ବାମପଥେ ଦେଉ ରଡ଼ି ।

□□□

ଗୁରୁପ୍ରସାଦ ମହାନ୍ତି

## ଅଲକା ସାନ୍ୟାଲ

ତୁମକୁ ବା ସଚିବାବୁ ଦେଖିଥିଲେ କେବେ
ଜାଣେ ନାହିଁ ଅଲକା ସାନ୍ୟାଲ
ସେତେବେଳେ ଆକାଶରେ ସ୍ୱର୍ଣ୍ଣଚିତା ବାଘ ଅବା ହରିଣର ଛାଲ
ଅବା ଥିଲ ଗୋଲ ହୋଇ ଜଳନ୍ତା ଜନ୍ତୁର ମଶାଲ ।

ମୁଁ ତୁମକୁ ଦେଖେ ଆଜି ତୁମେ ଢଅ ବ୍ଲାଉଜର ବୋତାମ
ଗୁ'ଦାଗ ତୁମେ ଧୁଅ ସେମିଜକୁ ଗରମ ପାଣିରେ,
ତୁମେ ପୁଣି କଥାକୁହ ମୁହଁପୋଛ ଟେବୁଲ ସେପାଖେଁ
ତୁମେ ପୁଣି ଉଠିଆସି ଆସ୍ତେ ବସ ପାଖ ଚଉକିରେ ।

ଦୁ'ପହର ଧୂଳି ଉଡ଼େ 'ଖାକି ଆଉ ଫିଲ୍ଡ଼ ଗ୍ରେ ଧୂଳି'
ସିଗାରେଟ୍ ଧୂଆଁ ପୁଣି ସ୍ତର ହୋଇ ବସିଯାଏ ଜଣଫୁଲ୍
କାଗଜଫୁଲରେ
କାଉ ଆଉ ବାଦୁଡ଼ର ଚେଁ-ଗୁଁ ମିଶିଯାଏ ଏକାଠି ବାହାରେ
କୋଇଲାର ଧୂଆଁ ପୁଣି ନଣ ମୋଡ଼ି ମୋଡ଼ି ଉଠେ,
ରିକ୍ସାବାଲା ବାଟ ଯାଏ ଭୁଲି ।
ତୁମକୁ ଦେଖେ ପରେ ଜୋତା ଷ୍ଟ୍ରାପ୍ ତୁମେ ଧୀରେ ଖୋଲ
ତୁମେ ଆସି ଲେଟିପଡ଼ ବିଛଣାରେ ବେଣୀ ଆଉ ଶାଢ଼ି ଅସଂଯତ
ତୁମେ ପୁଣି ଆସ୍ତେ ଉଠ ଲୁଗାପଟା ଠିକ୍ଠାକ୍ କର
ଟାଉନହଲ ସଭାରେ ମୁଁ ପାଏ ପୁଣି ତୁମର ସାକ୍ଷାତ ।

ତୁମକୁ ବା ସଛିବାରୁ କେବେ ଥରେ ଚିତ୍ରରଥ ଗନ୍ଧର୍ବ ହାତରୁ
ଛଡ଼ାଇ ଆଣିଲାବେଳେ ତୁମେ କଲ ଜୟଜୟକାର
ତା ପରେ ବା ପୁଣି କେବେ ନୂଆଖାଲି ପଠାଣ ବସ୍ତିରୁ
ଭାରତର ସ୍ୱାଧୀନତା ଦେଲା ପୁଣି ଦ୍ୱିତୀୟ ନିସ୍ତାର ।

ଦ୍ୱିପ୍ରହର କ୍ଲାନ୍ତ ହୁଏ ସନ୍ଧ୍ୟା ଆସେ ରେଳପୋଲ ଆଡ଼ୁ
କୋଇଲା ଚୁଲିର ଧୂଆଁ ଆଉ ଦେଖାଯାଏ ନାହିଁ,
ଚୁପ୍ଚାପ୍ କାଉ ଓ ବାଦୁଡ଼ି.
ସିଗାରେଟ୍ ଧୂଆଁ ହୁଏ ଆସ୍ତର ଜମାଟ ପୁଣି
ନରଗିସ୍ ନେତାଜୀ-ଫଟୋରେ
ଆକାଶରେ ଜହ୍ନ ପୁଣି ଦେଖାଦିଏ ଅକସ୍ମାତ୍ ଗୋଲ ତାର
ତଳଓଠ ଦାଗରେ କାମୁଡ଼ି ।

ମୁଁ ତୁମର ଶୁଣେ ଆଜି ଝଡ଼ ପରି ଭୀଷଣ ବକ୍ତୃତା
ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ କାଦୁଅ ପାଲଟି
ଛିଣ୍ଡା ଚଟି କାଗଜରେ ତୁମର ଯା ଅବଶିଷ୍ଟ ରହେ
ପବନ ସେତକ ନିଏ ସଡ଼କରୁ ସାଉଁଟି ସାଉଁଟି ।

ଭଙ୍ଗା ନୂଆଖାଲିରେ ବା କଲିକତା ନୂଆଦିଲ୍ଲୀ ଆଡ଼େ
କାଉ ଆଣ୍ଟି ବାଦୁଡ଼ିର ଚେଁ ଚୁଁ , ପୁଣି ଏଠେ ଯିବା ଓ ଆସିବା
କଟକରେ ଗଳି ଗଳି ରାସ୍ତା ଛକରେ ଛକରେ
ରାଢର ପ୍ରସୂତ-କ୍ଳିଷ୍ଟ ସକାଳର ଭ୍ରୁଣ ଜନ୍ମ ନେବା ।

ତା ଭିତରେ ତୁମେ ପୁଣି ପ୍ରେମ କର, ଗର୍ଭବତୀ ହୁଅ
ସିନେମାର-ହ୍ୟାଣ୍ଡବିଲ୍ ମୁଁ ଦେଖିଛି ତୁମର ଦେହରେ
ପବନ ତୁମକୁ ଯେବେ ଆସ୍ତେ ନିଏ ବାଲିରୁ ସାଉଁଟି
ମୁଁ ତୁମର ସ୍ୱପ୍ନ ଦେଖେ ମୋର ଢିଲା ପାଇଜାମା
କାମିଜର ଅମରାବତୀରେ ।

□□□

ଚିନ୍ତାମଣି ବେହେରା

## ବେଙ୍ଗ

ଏଇ ଯେ ବସିଛି ବେଙ୍ଗ
ଚିନ୍ତାମଗ୍ନ ଦାର୍ଶନିକ ଭଳି
ତୁମେ କି ଦେଖିଚ ତାକୁ ?
ତୁମେ କି ଚିହ୍ନିଚ ତାକୁ ?
ଦୁଇଟି ତା ସ୍ଥିର ଆଖି ଭରି
ରହିଅଛି ହତାଶ କାଳିମା
ଅବସରପ୍ରାପ୍ତ ବୃଦ୍ଧ
ହୁଏତ କେ ଅଧ୍ୟାପକଙ୍କର ।
ହୋଇପାରେ ସେ ହତାଶା
ଜୀବନଚର୍ଚ୍ଚା ଶେଷ ପରିଣତି ।

ଅବା କେଉଁ ବୃଦ୍ଧ ବିପ୍ରର କି
ଶେଷପଥେ ଡାଇବେଟିସ୍ ଭୋଗୀ
ମୁହୂର୍ତ୍ତିର ଅବସରେ
ଧ୍ୟାନମଗ୍ନ ହୋଇ ମନେ ମନେ

ଦେହେ ଛାଙ୍କି ପଶଚଚ କଲା କୋଟ୍ ଏକ
ଭାବଇ ଅଖାତ କି ଯୁଦ୍ଧ ଦଣ୍ଡାଦେଶ ଅଥବା ମନ୍ତବ୍ୟ
ସଂସାରର ଦୋଷୀ ଜନ ପ୍ରତ;
ହୁଏତ ଭାବୁଛ ମନେ ଦେଖୁଛ ନିଷ୍ଠଲେ
ଏ ଦୁନିଆ ଚାଲିଛି ତା ବାଟେ
ଯୀଶୁ ଗାନ୍ଧୀ ରକ୍ତ ପିଇ ପିଇ;
ସେଇଭଳି ବସିଚ ଏ ବେଙ୍ଗ
ତୁମେ କ ଦେଖିଚ ତାକୁ ?
ତୁମେ କ ଚହ୍ନିଚ ତାକୁ ?

ମାଟି ସଙ୍ଗେ ମାଟି ଭଳି ମିଶି
ଭିଡ଼ ତାର ସରୁ ସରୁ ପାଦ
ବସିଅଛି ଯାତ୍ରୀ ଏକ
ଯାତ୍ରାପଥେ ହୋଇ ଗତକ୍ଲାନ୍ତ ।
ସେହୁପଣ ବସିଛି ଏ ବେଙ୍ଗ
ଚାହିଁଅଛି ଦୂରପଥେ ପୁଣି
କାହିଁକ ଚାହିଁଛି ? କଅଣ ଚାହୁଁଛି ?
ହୁଏତ ଚାହୁଁଚ ଆଶା—ସାଥିଜନ ସାନ୍ତ୍ୱନାର ଆଶା
ଉବସ ଆଲୋକ କମ୍ବା ଦୂର ସାତି ନକ୍ଷତ୍ରର କାନ୍ତ
କମ୍ବା କଛି ଖଦ୍ୟୋତ-ଆଲୋକ ।
ମାଆ-ଭାଇ-ଭଉଣୀ ତା ନାହିଁ
ଏ ବଶାଳ ଧରଣୀର ପୁରେ
ହଜାଇଚ ସାଥୀ ପରଜନ
ଜୀବନର ଅନ୍ତରଙ୍ଗ ବନ୍ଧୁ
ସତେ ଅବା ମୂର୍ତ୍ତିବନ୍ତ ବ୍ୟଥା ପିଣ୍ଡ ଏକ ।
ସେଇଭଳି ଏଇ ବେଙ୍ଗ
ବସିଅଛି ତୁମ ଆଗେ ଏକାକୀ ନିର୍ଜନ
ତୁମେ କ ଦେଖିଚ ତାକୁ ?

ତୁମେ କ ଚହ୍ନିଚ ତାକୁ ?
ଏଇ ବେଙ୍ଗ ଦେହେ ତାର ପିନ୍ଧି
ଖଦଡ଼ିଆ କଲାକୋଟ କଲା ପାଇଜାମା

ଉପାସନାରତ କେନ୍ଦ୍ର ଯାଜକ ବା ପୁରୋହିତ ସମ
ଧୀର ସ୍ଥିର ଶାନ୍ତ ଭାବେ
କୀଟର ଅପେକ୍ଷା ରଖେ
ଖାଦ୍ୟର ଅପେକ୍ଷା ରଖେ
ବକ୍ଷେ ଭରି ଗ୍ରାସ-ପ୍ରଲୋଭନ ।
ତୁମେ କି ଚିହ୍ନିଚ ତାକୁ ?

ତୁମେ କି ଦେଖିଚ ତାକୁ ?
ଫକ୍‌ଫକ୍ ଡେଇଁ ଯାଇ
ଲୁଚିଯାଏ ଆଖି ଅନ୍ତରାଳେ
କେଉଁ ବଣେ ଅବା ବୁଦା ମୂଳେ
ଦୃଶ୍ୟ-କାବ୍ୟ ଅଭିନୟ ସାରି
କଳା-ପଟୁ ଅଭିନେତା ସମ ।
ଅବା ଶିଶୁ ଜନାଳେକ ଭୟେ
ଯେଉଁପରି ନିଏ ଯାଇ
ତା' ଜନନୀକୋଳର ଆଶ୍ରୟ,
ଗୃହେଁ ଅଙ୍କ-ଅନ୍ଧକାର
ସେଇ ଶାନ୍ତ—ସେଇ ଶାନ୍ତ ଶ୍ରେୟ
ତାଆପାଇଁ—ହୁଏତ ବ ଶ୍ରେଷ୍ଠ ଜନ୍ମ ପାଇଁ,
ସେଇପରି ଏଇ ବେଙ୍ଗ
ନିଏ ଶାନ୍ତ-ସୁଡ଼ଙ୍ଗ ଆଶ୍ରୟ
ତୁମେ କି ଦେଖିଚ ତାକୁ ?

ତୁମ ଆମ ଗୋଡ଼ତଳେ
ଏ ବେଙ୍ଗ ଗଳିଯାଏ ପୁଣି
କେବେ ଖିରୁ—କେବେ ପୁଣି ଚଟପଳ ଖେଳପିଲା ସମ
ସରଳତା-କୁତୂହଳ—କେବେ ବ ସେ ଆତଙ୍କର ମୂର୍ତ୍ତି
ତୁମେ କି ଦେଖିଚ ତାକୁ ?
ପୁଣି କେବେ କ୍ରୀଡ଼ା କାମୀ ସଂସ୍କାରବଶ୍ୟାସୀ
ପଲ୍ଲୀଗ୍ରାମ ବାଳକବାଳିକା
ଏଇ ବେଙ୍ଗ-ବଚ୍ଛା ଧରିଆଣି
ଗ୍ରାମ ଦାଣ୍ଡେ ବିରଚନ୍ତି ନୃତ୍ୟ

କରିବାକୁ ବର୍ଷା ଆବାହନ
ବୃକ୍ଷହୀନ ଶସ୍ୟହୀନ ଦେଶେ,
ଏହି ବେଙ୍ଗ ବର୍ଷା-ସହଚର
ଅଭିଶପ୍ତ-ଇନ୍ଦ୍ର-ପରିଜନ
ତୁମେ କି ଚିହ୍ନିଚ ତାକୁ ?

ପୁଣି ତୁମେ ଦେଖିଚ କି
ଆଜୀବନ ରଙ୍ଗାଜୀବୀ କେନ୍ଦ୍ର ଲେଖକର
ଶୋଚନୀୟ ଶେଷ ପରିଣତି ?
ଖେଳାଇ ଆନନ୍ଦ ଦେଇ ଅନ୍ୟକୁ ସେ ନିଜେ
ହୁଏ ଶେଷେ ମୃତ୍ୟୁଗ୍ରସ୍ତ ଜଡ଼ପିଣ୍ଡ ଏକ
ଅନ୍ୟର ସେ 'ଆହା' ପଦ
ଅବା ଘୃଣା ବିରକ୍ତିର ପାତ୍ର !
ସେହିପରି ଏହି ବେଙ୍ଗ
ବିଜ୍ଞାନଶ୍ରେଣୀର ଏକ ଲବୋରେଟ୍ରିରେ
ପଡ଼ିଥାଏ କଣ୍ଟାବିଦ୍ଧ ପ୍ରାଣହୀନ ହୋଇ
ତୁମେ କି ଦେଖିଚ ତାକୁ ?
ପଡ଼ିଥାଏ ଅବହେଳେ
ସତେ ଅବା ଘୃଣ୍ୟ ବସ୍ତୁ ଏକ ।
କିନ୍ତୁ ଏହି ବେଙ୍ଗ—ନିଃଶବ୍ଦ ଏହି ଶାନ୍ତ ବେଙ୍ଗ ।

ହୁଏତ ବରଇ ମୃତ୍ୟୁ ତୁମ ଆମ କୌତୁକର ପାଇଁ
ଦେବପୁତ୍ର ଯୀଶୁ ଭଳି ଅବା—ମର୍ତ୍ତ୍ୟେ ଯୀଶୁ ଜନ୍ମ ପାଇଁ
ମନୁଷ୍ୟର ଜ୍ଞାନଚର୍ଚ୍ଚା—ମନୁଷ୍ୟର ସୁଖଶାନ୍ତି ପାଇଁ
ଏହି ବେଙ୍ଗ ଦେଇଯାଏ—
ଶେଷେ ତାର ପ୍ରାଣବଳି ଆହା
ପୃଥିବୀର ପ୍ରୟୋଜନ ପାଇଁ ।
ତୁମେ କି ଚିହ୍ନିଚ ତାକୁ ?
ସେହିପରି ତୁମ ଆମ ପ୍ରାଣ
ମୃତ୍ୟୁ ପରେ ଯାଏ କେଉଁ ଦେଶେ ?
ଆଶ୍ରା ନିଏ କେଉଁ ତରୁମୂଳେ
ତୁମେ କି ଦେଖିଚ ?

ତୁମେ କି ଦେଖିଚ ପୁଣି
ଏଇ ଦେହେ ପ୍ରୟୋଜନ ଲାଗେ ଅବା ନାହିଁ
ଖେଳ ପାଇଁ—ଜ୍ଞାନଚର୍ଚ୍ଚା ପାଇଁ
ଯାଦୁକର କେଉଁ ମାସ୍ତାଙ୍କର
ମୁଠି ପରେ ?
ତୁମେ କି ଦେଖିଚ—ତୁମେ କି ଚାହିଁଚ
ଏଇ ବେଙ୍ଗ—ପିତାମହ ବେଙ୍ଗ ?

□□□

ବେଣୁଧର ରାଉତ

## ସାର୍

ସାର୍ କେବେ କହୁଥିଲେ କ୍ଳାସରେ ବାଲ୍ୟର ଏକଦା,—
(ପୂର୍ବାପୂର୍ବ ମନେନାହିଁ)—
ଆବେଗ ଓ ଇତିହାସ ମିଶା ଅଧା ଅଧା—
ସୁନାର ଫସଲ କଥା ଧରାର ଏ ସ୍ୱର୍ଗିକ ମାଟିରେ,
ବୈଦିକା ସୁ-ବର୍ଣ୍ଣା ଉଷା-ରଞ୍ଜିତ ଏ ଜନର ମଠରେ
ସୂର୍ଯ୍ୟର ରକ୍ତିମାସ୍ନାତ ମେରୁଗିରି ସୁନାର ଭୂଧର,
ବରୁଣର ନୀଳଦେଶେ କଳିଙ୍ଗର ବୋଇତ-ବହର
ଆଣିବା ସୁବର୍ଣ୍ଣଦ୍ୱୀପ, ସୁନାସିଂହ ହସଖେଳ କଥା—
ଏଇପରି କେତେ କ'ଣ—ମିତବାକ୍ୟେ ଅଦ୍ଭୁତ ବାରତା ।
ସାର୍ଙ୍କ ଆବିଗ୍ନ କଣ୍ଠ ବାଲ୍ୟର ମୋ ବିହ୍ୱଳ ଆଖିରେ
ଆଙ୍କିଥିଲା ଅତୀତର ପ୍ରାଣବନ୍ତ ଛବି ଏକ ବର୍ଣ୍ଣାଢ୍ୟ ଭୂତରେ ॥

ଇଆପରେ ଦେଖିଛି ମୁଁ ବାରବାର ସୁବର୍ଣ୍ଣର ସେଇ କଳାଛବି
ଆପଣା ସୃଜନମୁଗ୍ଧ ଶିଳ୍ପୀ ପରି ପ୍ରାଣ ଦେଇ, ଦ୍ରବି;
ସେଇ ଛବି ବିଭୂତିର ଗହ୍ୱରରେ ସାର୍ଙ୍କର ଆବିଗ୍ନ ସଙ୍ଗୀତ
ଶୁଣିଛି ମୁଁ ଅପ୍ରମାଣ ମୂର୍ଚ୍ଛନାରେ ହୋଇ ବିହ୍ୱଳିତ ॥

କଲୁ ସେ ଅଞ୍ଚନ ଅବା ନଭଗଲ ! ଦେଖିଲି ମୁଁ
ସୁନା ଖାଲି, ସୁନା;
ବାଲ୍ୟର ବ୍ୟଞ୍ଜନା ହାସ୍ୟ ଭୁଲିଗଲି ରଖି ମାତ୍ର କପ୍ସିତ୍ ନମୁନା
ବାଦଶା, ସୁବର୍ଣ୍ଣ-ଦ୍ୱୀପ, ଉଜ୍ଜୟିନୀ, କଚ୍ଛ କଚ୍ଛ-ସୁନାଫଳ,
ସୁନାର ଫସଲ ।
ଫସଲକଣ୍ଠାର ଗୀତ ଭୁଲିଗଲି ସାର୍ଙ୍କର—ଭୁଲିଗଲି
ସୁନାର ଗଜଲ ।
ଯାହା କଚ୍ଛ ରହିଗଲା ସାଦା ସାଦା ପ୍ରତଧ୍ୱନ କମ୍ପିତ୍ ଲହର—
ଆବେଗର ସତ୍ତା ନାହିଁ, କାହିଁ ଗଲା ହଜ ସେଇ
ପ୍ରାଣର ବହର !!
ସାର୍ଙ୍କୁ ଭେଟିଲି ଏବେ ଅକସ୍ମାତ୍ ଶୀର୍ଣ୍ଣ ଏକ
ଫଟ୍ଟୁତ ସନ୍ଧ୍ୟାରେ ।
ଜନ୍ ବାଗ ଦୂର୍ବାଦଳ ବହଲରେ ଅଧା ଅଧା
ଆଲୋକ-ଅନ୍ଧାରେ ।
ସହଜେ ହେଲନ ଚହ୍ନି; ଏ ମୂର୍ତ୍ତିରେ ଅଙ୍କିତ ବା ଜଗର ବୟସ
ଅପରଚୟରେ ଯେଉଁ ପରଚୟ, ପରଚୟ
ଅବୋଧ ରହସ୍ୟ ।।
ବ୍ୟଥିତେ କହିଲେ ସାର୍, 'ସୁଖୀ ହେଲି ଦେଇଯିବ
ମୋର ଶେଷବାଣୀ
ଶେଷର ଭରତବାକ୍ୟ—ସତ୍ୟଟିଏ—ହୃଦୟର
ନଭୃତ କାହାଣୀ ।
ସୁନା ଫସଲର ଗାନ, ସୁନାମେରୁ, ସୁନାର ବାରତା
ଯାହାକୁ ଯା ଦେଇଥିଲି ସୁନା ଆଖି—ସବୁ ଅତକଥା ।
ସକଳ ଇ ସେ ଆଖିରେ ସୁନା ଦଶେ, (ଦେଇଚ ଆମସ୍ୟ !)
ସେ ସୁବର୍ଣ୍ଣେ ଦୀନ ଦୁଃଖୀ—ଦୁଃଖତାପ ଦଶେ ଛଳ
ମଞ୍ଜୁଳ ଶ୍ରୀମସ୍ୟ ।
ଲୁହୁଁ ତ ଫେରାଇନେବ ସୁନା ଆଖି, ଯାବତ ସୁନାର,
ସତ୍ୟରେ ଆବେଗ ପ୍ରାସ୍ୟ ମିଶେ ନାହିଁ, ଯଥା ଏଇ
ଆଲୋକେ ଅନ୍ଧାର ।
ଆସନ୍ତା ଲେଉଟି ଯେବେ କଳସର ପୀତ ପୀତ
ସେ ହଳଦ୍ୟା ଦନ

ବାଲ୍ୟର ସମଗ୍ର ମନେ ଫୁଟାନ୍ତି ମୁଁ ମାଟିଫୁଲ
ଯାତନାର, ଅଥଚ ଶାଳୀନ ।।
ଦେଶ ମୁହିଁ ଭଲପାଏ । ତଥାପି ଏ ଦେଶଟା କ
ବିଚିତ୍ର ଖିଆଲ !
ଚଳଣିର ଧାରା ଧର୍ମେ, ଧନେ, ମନେ, ଜନେ ଜନେ
ଆକାଶ ପାତାଳ ।
ହୁଏତ ଫର୍ଣ୍ଣିଲେ ସୁନା ଏ ପାଟରେ ଲେନ୍ସ ଲେନ୍ସ
ନଖିଲ ବିଳାସେ,
ସେ ପାଖେ ଜୀବନ ଖୋଜେ ଅନ୍ତ ପାଖେ
ମଣିଷଇ ମୁଠାର ପରାସେ ।'
କାହ୍ନୁର ସମସ୍ତ ରହି କହିଲେ ସେ, 'ଯାହା ମୋର
କହିବାର କଥା
ବୋଧ ଅନ୍ତ, ଆଚ୍ଛା ତୁମେ ଦେଖିଥିବ
ବମ୍ବେ ଦିଲ୍ଲୀ ଅବା କଲିକତା
ଏଣିକି କହିବା ଆଗେ ବସୁଧା ଇ ପରିବାର
ଅବା ମୈତ୍ରୀବାଣୀ
ପାଖର ମଣିଷ ଚିହ୍ନ' । ଯାର୍‌କର ଗୃହାଣିରେ
ଏବେ ମୁହିଁ ନୂଆର ସନ୍ଧାନୀ ।
□□□

ଜାନକୀବଲ୍ଲଭ ମହାନ୍ତି

## ବଣଭୋଜି

ଆମେ କେତେ ନରନାରୀ ଧନୀ ମଧ୍ୟବିତ୍ତ
ମାନନୀୟ ତଥା ସ୍ନେହାସ୍ପଦ
ଆପଣାର ସ୍ଫୁର୍ତ୍ତି ଆଉ ଉଲ୍ଲାସକୁ ଭରଦେଇ ମଟର ବସ୍‌ରେ
ଆମେ ଦିନେ ଦୂରେ ଛୁଟିଗଲୁ
କେତୋଟି ମୁହୂର୍ତ୍ତ ପାଇଁ ଆମର ଯା ପରିଚୟ
ତାହା ଭୁଲିଗଲୁ
ସେତେବେଳେ ଆମ୍ରଗଛ ବଉଳସମ୍ଭାର

ଦେହ ଓ ମନରେ ରଙ୍ଗ
ରଙ୍ଗ ପୁଣି ଅଧରେ  ଅଧରେ
ବକାଳଣା ଗହଳ  ଚହଳ
ଗ୍ରାମ ଉପକଣ୍ଠେ...
ବାଣ ଫୁଲ ମେଢ଼ ପଲଟଣ
କଳାଘୋଡ଼ା ନଉଡ଼ ଖେଳରେ
କର୍ମ ଥିଲା ମେଳଣ ପଡ଼ିଆ
ଝାଞ୍ଜ, ଖୋଳ, ଖଞ୍ଜଣି ବାଦ୍ୟରେ

ଆଖିରେ ନାଚଲା ବନ୍ଧୁ ଦଗ୍‌ଦଳସ୍ତ
ଝରକା ଭିତରୁ ଆମେ ସିନେମା ଦେଖିଲୁ ।
ଅଚହ୍ନା ଜଗତ କେତେ ଅଚହ୍ନା ମୁଖଶ୍ରୀ
ବାଟଚଲା ଅଜଣା ପଥିକ
ହୁରୁଡ଼ା ବଳଦ କାନ୍ଧ ଆମଲଗି ଯୁଆଳି ଫିଟିଲା
ଆମେ  ସବୁ ପରସ୍ପରେ ଭଲକରି ନିଜକୁ ଚହ୍ନିଲୁ ।

ଆମେ ବାଛିନେଲୁ ଏକ ଉଦ୍ୟାନର ସ୍ଥଳୀ
ସମ୍ପୂର୍ଣ୍ଣ ଅପରିଚିତ, ନୁହେଁ ଯା ଆମର
ଯାହାକୁ ଏଇଠି ରଖି ଆମେ ସବୁ ପୁଣି ଫେରିଯିବୁ
ତଥାପି ତାହାକୁ ଘେରି
ଆମେ  ସବୁ ମନଇଚ୍ଛା ବହୁତ ଖେଳିଲୁ;
ତହିଁରୁ ମିଳିଲା ଯାହା ଆନନ୍ଦରେ ତାକୁ ଫେଣ୍ଟିଦେଇ
ଆମେ ସବୁ ଏକତ୍ରେ ଭୁଞ୍ଜିଲୁ ।
ପଲ୍ଲୀ ଏବଂ ସହରକୁ ମୁକ୍ତକଲୁ
ମୁକ୍ତହେଲୁ ନିର୍ଜନ ପର୍ବତ ସାନୁ, ହ୍ରଦ ଆଉ ଦେବାଳୟ ସହ
କେତେଗୋଟି ମୁହୂର୍ତ୍ତକୁ ଘଷି ମାଜି
ଆନନ୍ଦରେ ଚକ୍‌ଚକ୍ କଲୁ ।

ତା'ପରେ ଗୁଡ଼୍‌ବାଇ, ନମସ୍ତେ ନମସ୍ତେ
ମଟର ରହିଲା ଆସି
ପୁଣି ଆମେ ଫେରିଗଲୁ
ଯେ ଯାହାର ଖୋପ ଭିତରକୁ
ସେଇ ଆମ ବନ୍ଦବାର  ଶଗଡ଼ଗୁଳାକୁ ।



ରମାକାନ୍ତ ରଥ

# ମାଷ୍ଟ୍ରାଣୀ

ଦୁଇ ଆଉ ଦୁଇ ମିଶି ଚାରି, ଏତେ ସ୍ପଷ୍ଟ ସତ୍ୟର କାହିଁକି
ଲୋଡ଼ା ମୋର ଯୌବନର ସାହାଯ୍ୟ ? ହେଲେ ନା ହେଲେ ମୁଁ
ପ୍ରୌଢ଼ା ହୋଇଯିବି ଏବଂ ଚଷମାର ମୋଟା ଫ୍ରେମରୁ ମୋ
ପଶିଯାଇଥିବା ଗାଲ ଝୁଲୁଥିବ ବାଦୁଡ଼ିପରି, ବା
ମୁଁ ଘୋଷାରି ଚାଲୁଥିବି ଅସହଜ ପୃଥୁଳ ଶରୀର ।
ସେତେବେଳେ ମଧ୍ୟ ମତେ ଦୁଇ ଏବଂ ଦୁଇ ମିଶି ଚାରି
ବୋଲି କହିବାକୁ ହେବ । ମୁଁ ସତ୍ୟର ଖୁବ୍ ଦରକାର,
ସବୁବେଳେ, ମୁଁ କଣ ଚାହିଁଛି ତାକୁ ? ବୋଧେ ବେଳେବେଳେ
ଗୋଟେ ଅଧେ ମିଛକଥା ମତେ ବେଶ୍ ଆରାମ ଦିଅନ୍ତେ ।
ସ୍କୁଲ କୋଠରି ନୁହେଁ ସର୍ବାଧିକ ଶ୍ରେଷ୍ଠ ସବୁବେଳେ ।
ସେମାନେ କହନ୍ତି କିନ୍ତୁ ଭବିଷ୍ୟତମାନେ ମୋ ଦେଶର
ମୋ ହାତରେ ଅଛନ୍ତି ଓ ମାତା ପିତା ସବୁ ମୁଁ ତାଙ୍କର

ମୁଁ ଚାଲିଆସିଛି ତିନି ଅଦ୍ଭୁତ ଜଗତ, ପ୍ରଥମତଃ ଘର
(ବୈକୁଣ୍ଠ ସମାନ ଅହା ଅଟେ ସେହି ଘର), ଦ୍ୱିତୀୟତଃ
ବିଭାଘର (ଭଲ ବୋଧେ ଲାଗିଥାନ୍ତା ବରଲପାଟକୁ
ସାଦା କରି ପିନ୍ଧି ଲଇଁ ଲଇଁ ଚାଲିଥିଲେ, ବା ପାଟଳ
ହଳଦିଆ କାଗଜରେ ପଢ଼ୁଥିଲେ ଗୀତ ମେ କାହିଁକି
ମଙ୍ଗଳ ବାଜଣା ବାଜେ, ବହେ ଚୈତ୍ର ଚଇତାଳି ଏବଂ
କୁହୁକୁହୁ ଗାଏ ପିକ, ହେ ବିଦେଶୀ ଆମର ଅପାକୁ
ଚୋରି କରିନିଅ, ଯା ହେବାର ହେଲାଣି ଏଣିକି
ନବଦମ୍ପତିଙ୍କ ଶିରେ ଢାଳ ପ୍ରଭୁ ତମ କୃପାବାରି);
ତୃତୀୟତଃ, ମାତୃତ୍ୱ (ମୁଁ ନୂଆ ନୂଆ ଡିଜାଇନ ଶିଖି
ଜାମା ପେଣ୍ଟ କରିଥାନ୍ତି ମୁଁ ଛୁଞ୍ଚିକାମରୁ ବି କିଛି);

ଚତୁର୍ଥତଃ, ପ୍ରେମ (ଏଙ୍କ ସାଙ୍ଗ ହୋଇ ମେଳା ଦେଖିଯିବା)
ଏପରି ଅନେକ କିଛୁ ଆଦ୍ୟ ଯୌବନରୁ ଶୁଣୁଅଛୁ ।
ସତ୍ୟର ବା ପ୍ରୟୋଜନ ଏ ଅବସ୍ଥା (ନିଃସ୍ୱାର୍ଥ ତ୍ୟାଗ?)
ସୁତରାଂ ମୁଁ ହୁଏତ ଦୁଇ ଏବଂ ଦୁଇ ମିଶି ଚାରି
କହିବାକୁ ଉପଯୁକ୍ତ—ଆଜି, କାଲି ବର୍ଷ ବର୍ଷ ଧରି ।

ବହୁତ ହଳଦିବର୍ଣ୍ଣ ସକାଳ ଓ ଅସଂଖ୍ୟ ସଫେଦ୍
ଦ୍ୱିପ୍ରହର ଓ ବହୁତ ଅପରାହ୍ନ ନାରଙ୍ଗ ରଙ୍ଗର
ଫୁଟିଛି ମୋ ବଗିଚାରେ ନାନା ରଙ୍ଗଫୁଲ ପରି । ଏହି
ବଗିଚା ସୁନ୍ଦର ଜାଗା—ପରିଷ୍କାର, ନିସ୍ତବ୍ଧ, ଶୀତଳ ।
ମୁଁ ସୁତରାଂ ଏଠି ବସେ ଫୁରୁସତ୍‌ବେଳେ, ଭଲଲାଗେ
ନ କହି ଦେଖିବା ଲାଗି, ଆଖି ପଛେ ହେଉ ଛଳଛଳ ।
ସବୁଠାରୁ ଭଲଲାଗେ କାମଦାମ ସାରି ଖାଇଦେଇ
ହାତଗଣ୍ଡା ଶୋଇବା ଓ ବଦଳାଇ ଲୁଗାପଟା
ପାନଖିଲେ ଖାଇ ଏକ ଚଉକିରେ ଏଠି ବସିବାକୁ ।
ଏ ବଗିଚା ପରିଷ୍କାର, ମାଟି ତାର ବାରମ୍ବାର ଖୋଳି
ଖତରେ ତା ଅନ୍ତ ପୋଡ଼ି, ପୋକଜୋକ ଓ ଚେରମୂଳ
ସବୁ ନଷ୍ଟକରି ତାକୁ ମୁଁ ବସିବା ଲାଏକ୍ କରାଇ
ଏଠି ବସେଁ । ଆଉ କିଛୁ ଅର୍ଥ ନାହିଁ ଏଇ ବଗିଚାରେ ।
ଚାରୁ ବନ୍ଦ ହୋଇଯିବା କମ୍ପା ଧୂଡ଼ୁ ଧୂଡ଼ୁ ଚମତ୍କାର
ଅସ୍ୱସ୍ତି ଲାଗିବ ନାହିଁ । ଏ ବଗିଚା ବଡ଼ ଚମତ୍କାର ।
ଏ ବଗିଚା ଚମତ୍କାର, ଯଦିଓ ତା ଭିତରେ ବସିଲେ
ସାଧାରଣ ଜଣାଯିବ ମୁହୂର୍ତ୍ତିକ ପରି ଏହି କଥା
ନିଶ୍ଚୟ ଅତିରଞ୍ଜନ । ସତକଥା କୁହାଯାଉ, ପ୍ରତି
ସେକେଣ୍ଡ ଏଠାରେ ଲାଗେ ମିନିଟକ ପରି ଓ ପ୍ରତ୍ୟେକ
ମିନିଟ ଘଣ୍ଟାକ ପରି, ପ୍ରତି ଘଣ୍ଟା ବହୁତ ଶତାବ୍ଦୀ
ପରି ଲାଗେ, ମୋର ଗୋଟା ଛଟପଟ ଦେହ ମିଶିଯାଏ
ଓଷଦଙ୍କ ଦୂର ବାସ୍ନା ସାଙ୍ଗେ ଏବଂ ଅଦୃଶ୍ୟ ଅନେକ
ଝିଙ୍କାରିଙ୍କ ଶବ୍ଦ ସାଙ୍ଗେ ଖୁବ୍ ବେଗି ଦୁଇଟି ଘଣ୍ଟାରେ ।
ମତେ କେତେ ବର୍ଷ ହେଲା ? ପନ୍ଦର ବା ପଚିଶ ଷାଠିଏ ?
ମୁଁ ଜାଣେନି, ମୁଁ କେବଳ ଦେଖୁଅଛି ଏକ ଅବାନ୍ତର
ଯୌବନ ମିଳାଇଯାଏ ଲକ୍ଷ୍ୟହୀନ ଏକ ବାର୍ଦ୍ଧକ୍ୟରେ

ଯେପରି କୌଣସି ଚନ୍ଦ୍ରେ ଗ୍ରହଣ ଏକ ଦ୍ରବସ୍ଥା ନାଷ୍ଟିରେ
ଚନ୍ଦ୍ରାନ୍ତରେ ଆଲୋକିତ ଝରକାର କାଚ ଯାଙ୍କେ ମିଶେ
ଓ ଜ୍ୟୋତିଃରେ ପଛଆଡ଼ ମିଶିଯାଏ ସଫେଦ ପର୍ଦାରେ
ଯାହା ଝୁଲେ ଫୁଲି ଫୁଲି ପଶିଆସୁଥିବା ପବନରେ ।

ଏ ବଗିଚ୍ଚ ଚମତ୍କାର । ବେଳେ ବେଳେ ଭୁଲ ହୋଇଯାଏ
ଯେ ଆଜିର ସତ୍ୟ ଖାଲି ଆଜିପାଇଁ ସତ୍ୟ ଅଟେ । ହୁଏତ
ନା ହୁଏତ ମୁଁ ଦୁଇ ଏବଂ ଦୁଇ ମିଶି ଗୁଣି କହିବାରୁ
କ୍ଷାନ୍ତ ହେବ । ଏ ଜଘନ୍ୟ ମଧ୍ୟଶଯ୍ୟା ବନ୍ଦ ହେବ ଏବଂ
ବନ୍ଦ ହେବ ଝାଲବୁହା, ବନ୍ଦ ହେବ ସବୁ କ୍ଲାନ୍ତି, ମୋର
ଗୋଟା ଦେହେ ଲଙ୍କାକର କ୍ଷତଚିହ୍ନ ବନ୍ଦ ହେବ ହୁଏତ ଅବା ହୁଏତ
ଆକାଶକୁ ଝଲସାଇ ଫୁଟୁଥିବ ବାଣ ଓ ଦୂରରୁ
ଶୁଭୁଥିବ ବାଜଣା ଏକ ଆସ୍ତେ ଆସ୍ତେ ପାଖେଇ ଆସିବା
ଶୋଭାଯାତ୍ରାର ଓ ବନ୍ଧୁ ବନ୍ଧୁ ଗ୍ରହଣିଆଙ୍କର
ଦ୍ୱାସ୍ଥ ଖାନା ରନ୍ଧାହେବ, ମାଇପି ଓ ପିଲାଙ୍କ ଭିଡ଼ରେ
ପଢ଼ୁଆ ଗହଳ ହେବ, କେତେ ପିଲା ବଢ଼ାଇବେ ହାତ
ଓ ମାଗିବେ ରଙ୍ଗ ରଙ୍ଗ ବେଲୁନ ଓ ଅନେକ ରଙ୍ଗରେ
ଅଙ୍କା ଇନ୍ଦ୍ରଧନୁ ଦେଖି ଆଁ କରି କେତେକ ରହିବେ
ହୁଏତ ନା ହୁଏତ, ହୁଏତ ଆଜିଠାରୁ ବହୁ ବର୍ଷ ପରେ ।
ମୋ ଦେଶର ଭବିଷ୍ୟତମାନେ କହୁ ଅଛନ୍ତି ହାତରେ
ମୋର, ତେଣୁ ପଛେ ରଖି ଅତୀତକୁ ହୁଅ ଆଗଭର,
ହରିଷ୍ମୃତ, ଜାଗ୍ରତ ଓ ସତ କହି ମଲେ ପଛେ ମର ।
ଆଗଭର ହୁଅ ହେ ମୋ କ୍ଲାନ୍ତ କ୍ଲାନ୍ତ ଆତ୍ମା ଆଗଭର,
ହୁଅ ହେ ମୋ କ୍ଲାନ୍ତ ଆତ୍ମା ହସ ନାହିଁ କମ୍ବା କାନ୍ଦନାହିଁ
ଯଥେଷ୍ଟ ସମୟ ଅଛି ହସିବା ବା କାନ୍ଦିବା ଉତ୍ତାରୁ
କମ୍ବା ଯୁଗପତ୍ ହସ କମ୍ବା କାନ୍ଦ ଉତ୍ତାରେ ସମୟ
ତଥାପି ରହିବ ଏବଂ ହେ ମୋ କ୍ଲାନ୍ତ ଆତ୍ମା କିଛି ବେଳ
ବଗିଚ୍ଚରେ ରହିଯାଅ ଆଗଭର ହୋଇବା ପୂର୍ବରୁ ।
ଏ ବଗିଚ୍ଚ ଚମତ୍କାର । ଆରାମରେ ବସି ଗୋଡ଼ ରଖି
ଗୋଡ଼ରେ ଓ ଶୁଣ ଏବେ ଗୃହଆଡ଼େ କୋଳାହଳମୟ
ଆସୁଥିବ ଶୋଭାଯାତ୍ରା ବାଜଣାରେ ! ଏବେ ଦେଖ ହୁଏତ
ଶୋଭାଯାତ୍ରା ଏବଂ ତମେ ତା ସମ୍ମୁଖେ କି ସୁନ୍ଦର ବେଶେ !

ପିଲମାନେ ମାରୁଛନ୍ତି ରଙ୍ଗ ରଙ୍ଗ ବେଲୁନ୍ କେବଳ
ଭାଙ୍କ ହାତମାନ କଣ୍ଠ । ଏ ଦୃଶ୍ୟ କି ଅପୂର୍ବ ଛବିଳ !
ଆଜି ସ୍କୁଲ ଛୁଟି, ଆଜି ଶୋଷଯାଦ୍ୱା ମାଷ୍ଟ୍ରାଣୀଙ୍କ ପାଇଁ
ଝିଇ ଓ କଉଡ଼ି ପଡ଼େ, ସବୁ କିଛୁ ସରଯାଇନାହିଁ ।

□□□

ସୀତାକାନ୍ତ ମହାପାତ୍ର

## ନଈ ମୁହାଣ

କାନ୍ଦନା ପାଗଳୀ ପରି, ମଥା ପିଟି ବାଳ ମୁକୁଳେଇ
କଇଁକଇଁ ହୋଇ ଆଉ କାନ୍ଦନା ଲୋ ବୋଉ ମୋ
ଅବୁଣୀ ସମୁଦ୍ର । ସାକ୍ଷୀ ରଖି ଅନ୍ତରୀକ୍ଷ
ଗ୍ରହ, ତାରା, ନିସ୍ତବ୍ଧ ପବନ । ତୋ ବଣିକେଶନ
ଏଇ ଫେରୁଅଛୁ ଲହରୀର ଦାଢ଼େ କାଟି
ବାଲି, ମାଟି ଯୋଜନ ଯୋଜନ ॥

ଅନ୍ଧାରର ଶୂନ୍ୟ ଆକାଶରେ ତୋର ଆଖି ଖୋସି
କାନ୍ଦନା ମୋ ମା' ପରି, ମେଲା ଦାଣ୍ଡଘରେ ବସି
ଏରୁଣ୍ଡି ରେ ଆଣ୍ଠୁ ରଖି; ଦୀପରୁଖା ଉପରର
ପିଲସଜେ ଶତ ସ୍ତୁଷ୍ଠ ମଳବନ୍ଧ ମିଳନ୍ତାରେ ଜାଳି
ତୋ ପୁଅ ଆସୁଛି ଫେରି, ପିଠିରେ ବୋକଣ୍ଟି ଆଉ
ହାତରେ ଲଣ୍ଠନ ଧରି ଲହରି-ଡଙ୍ଗାରେ ବସି
ତଳକୁ ମୁହଁକୁ ପୋତି ହାଟରୁ ବାହୁଡ଼ି ॥

ତୋର ନିଷ୍ଠେ ଭସ୍ମହେଲା,
କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା
ଲୁହ ଆଉ ଦୀର୍ଘଶ୍ୱାସ ଦେବି ମୁଁ କାହାକୁ
ହଜିଲା ଦରବ ଖୋଜି ମୋ ବଣିକେଶନ ଗଲା
ସମତଳ ଭୂମି ଆଉ ନଗ୍ର, ଗ୍ରାମ,
ଜଗୁଟିଆ ବଣ, ବିଲ, ମରୁଭୂମି ପଥରଗୁହାକୁ

ଆଜି ଏଠି ଗଡ଼ ଯାଇ ବନ ହେଲା
ବନ ଯାଇ ପୁଣି ହେଲା ଗଡ଼
ନାଁ [illegible] ପରି କେବେ ହେମାଳ ନକ୍ଷତ୍ର ସବୁ
ନଭଗଲେ ଶୂନ୍ୟତାର ଅଣ୍ଡା ଉଦ୍‌ବେଗରେ
ମୋଟା କୁହୁଡ଼ି ଗୁଦର ଜାକଜୁକ ଘୋଡ଼ିହୋଇ
ଡମିମାଛ, ଶାମୁକା ଓ ଗେଣ୍ଡାଦଳ ଯାଁଚି କରି
ପୁଣି କେବେ ଉଦେହେଲେ ଦେବ ଦିବାକର
ଆଖି ମଳି ବିରକ୍ତରେ; ମହାରୋଷଭରେ ॥

ଆଜି ତୋ ବଶିକେଶନ କ'ଣ ଅବା ଖୋଜିଥିଲା ?
ଶବ୍ଦ ଓ ଅର୍ଥର ଯେତେ କ୍ଷୀଣ ନଈକୂଳ,
ତା' ଭିତରେ ବାଲିବନ୍ଧ,
ସାମାନ୍ୟ ସମ୍ପର୍କ ସ୍ଥାପି କାର୍ଯ୍ୟ-କାରଣରେ
ସ୍ୱାନସାର ନିଜସ୍ୱ ଅନୁଭୂତିର ନିଭୃତ ନାଁ ରେ
(ଅବଶ୍ୟ ଯମଦେବତା ଏଣୁତେଣୁ ଘୁରେଇ-ତୁରେଇ
ନୂଆ ଓକିଲଙ୍କ ପରି ନାନା ଉପଲକ୍ଷ୍ୟ ଦେଇ
ମିଛଟାରେ ଟ୍ରେଷ୍ଟପିଲା, ସରଳବିଶ୍ୱାସୀ ସେଇ
ନଚିକେତା ଆଗେ
ସେଇ କଥା ବଖାଣିଲେ ବାରଆଡ଼ୁ ଫେଣେଇ ଫେଣେଇ)
କଥା ଯାହା ଜନମ ଓ ମରଣରେ ଠିକ ପିଲାଖେଳ,
ହାଲ୍‌କା ହେଲେ ଦେହମନ ଆକାଶକୁ ବାମ୍ଫ ହୋଇ
ଉଠିଯାଏ । ସାଇଁ ସାଇଁ ଘୂରିବୁଲି ଏଣେତେଣେ
ଭଗାବସ୍ତ୍ର ପରି, ପୁଣି କେବେ ପାହାଡ଼ରେ ମାଡ଼ ଖାଇ
ତଳେ ପଡ଼ି ବାଲିଶେଯେ ଶୁଏ ॥

ସବୁ ତେଣୁ ନିଜ ପାଣି (ଯଦି ବା ସେ ପାଣି ହୁଏ ସଙ୍କେତଭେଦେ
ଅନ୍ୟ ଲୋକ ପାଣି) । ସବୁ ପାଣି ଜ୍ୱଳନ୍ତର ହୁତାଶନ
ଅଶ୍ରୁ ପ୍ଲାବନରେ ମିଶାମିଶି ପ୍ରତିରୂପ
ବସ୍ତୁ ଓ ଘଟନାହୀନ ଅନ୍ଧାରର ସ୍ତୂପ ।
ସମସ୍ତ ମୁହୂର୍ତ୍ତ ସଦା ବର୍ତ୍ତମାନ, ମୁକ୍ତିହୀନ ଘନ ଅନ୍ଧକୂପ ॥

ତେଣୁ ଯେତେ ଗଲା କାଲି
ସବୁ ସ୍ମୃତି ଆଜି ଦିନଟିର
ସମସ୍ତ ଆସନ୍ତା କାଲି ଆଜିଟିର ସମ୍ଭାର ॥

ଚ୍ଛେଣ୍ଣୁ ମୁଖୁ କଚ୍ଛ ନୁହେଁ
ବେଶ୍ ଖାଲି ପବନରେ ଫୁଙ୍ଗୁଲା ଦେହରେ ଡମେ ଛୁଡ଼୍‌ଯାଅ
ଏବଂ ଏଣେତେଣେ ଭ୍ରମି ମିଶିଯାଅ ନାଲମାର ଘଞ୍ଚ ବସ୍ତିଘରେ
କମ୍ବା ଧୀରେ ଧୀରେ ଯାଅ କରକା ପର ମିଳେଇଁ
ନାଃଶବେ, ଚକଚକ ସୂର୍ଯ୍ୟକିରଣରେ ॥
(ସୂର୍ଯ୍ୟ···କିରଣରେ ॥)

ବୋକସ୍ତରେ ଏଇମିତ ଅର୍ଥହୀନ, ଅଭିଜ୍ଞାନ, ମୋଟା ଭ୍ରଷ୍ଟ
ପିଲଚ୍, ବସ୍ତାନ, ଝଡ଼, ଢଆପିଲ, ପନକଣ୍ଣ ମାଲ
ଆଜ ମୋର ମନେପଡ଼େ, ହସ ଲଗେ
ଯୋଉ ଦିନ ବେତର ଡରେ ଯୋଷିଲି
କୁକ୍‌କୁଟ ମୁଣ୍ଡେ ଅଚ୍ଛ ଚୁଳ
ମାଟି ଭିତରେ ବୃକ୍ଷମୂଳ ॥

ଯୋଜନ ଯୋଜନ ଧଣ ଅନ୍ଧକାର
ଲୁହା ଆଉ ପଥରଠୁ ଟାଣ
ଦେଢ଼ଫୁଟ ବ୍ୟାସାର୍ଦ୍ଧରେ ଜକଜକ ଏ ଆଲୁଅ
ନାଭିଲି କ ନନାଭିଲି ତୋ ପୁଅ ଲକ୍ଷ୍ମଣ,
ତରଙ୍ଗ-ଡଙ୍ଗାରେ ଏଠି ମୁମୂର୍ଷ୍ ଯେତେ ପଙ୍ଗ୍ୟାଏ
ମୁଷାମାଟି ଶଣ ଶଣ ମଙ୍ଗଳରେ ରୂମ୍ପି ଶୋଇଛନ୍ତି
ମହର୍ଷି ଗ୍ଭବାକ୍ ଏବଂ ବୁଦ୍ଧଦେବ, ଯିଶୁ ଖ୍ରୀଷ୍ଟ
ଭଲକରି ଦେଖ ମୋର ଭ୍ରାତାଙ୍କ ବଦନ ॥

ବୋଉଲେ, ତୁ ଭଲକଲୁ ଶଙ୍ଖାପୁର ନଜ ପେଟେ ରଖି
ଗ୍ଭରି ବେଦ ବ୍ରହ୍ମାଣ୍ଡରେ ବ୍ରହ୍ମା ଯାହା ବାନ୍ଧ ବୁଲୁଥିଲେ
ଠିକ୍ ଏଇ ମୋର ପରି, ବସ୍ତ୍ରାଣ୍ଡ ଫେରିବାଲା ପରି
ଗଲା ସବୁ ମୋଟ କରି ରଡ଼ି ରଡ଼ି
ପାନଅ, ସିନ୍ଦୂର, ଫିତା, ଦାନ୍ତଖଣ୍ଡା, ଅମର ଜମ୍ବର
ସେଥିରୁ ମିଳିଲି ମୁକ୍ତି
ଜକଜକ ଆଲୁଅ ଓ ଜାଙ୍ଗଲୁ ଜାଙ୍ଗ୍ ଲୁ ଯେତେ
ବୁଢ଼ିଆଣୀ ଜାଲ ପରି ଆତ୍ମଜ୍ଞାନ ବେଦନାରୁ
ତ୍ରାହିକରେ ଯେଉଁଥିରୁ
ତୋ ମାଁ-ସେନେହ, ଘନ ଆତ୍ମୀୟ ଅନ୍ଧାର ॥

ଆଜ ଠେଣୁ ଶେଷ ମୋର ସ୍ମୃତି ଆଉ ସପନର ଅସଂଖ୍ୟ ସରଣି
ବସ୍ତୁ ନାମଧାମ ଆଉ ଘଟଣା ଓ ଦେଶ କାଳ ପାତ୍ର
ଘାଟଭଙ୍ଗା, ବେଲ ନଯବେ ରତରଙ୍ଗ; ଆମ୍ବୁଲ ଓ ମାଟିଗୀତ
ବାଲିଖେଳ, ଦୀପଦାନ, ଭଙ୍ଗାକାଚ, ଛିଣ୍ଡା କନ୍ଥା
ଅନେକ କାହାଣୀ

ଅନେକ ମୃତ ପୃଥିବୀ । ମୃତ ସବୁ ବିମ୍ବ ଓ ପ୍ରତୀକ
ନିର୍ବାପିତ ବନ୍ଧୁ ସ୍ମୃତି, ସ୍ୱପ୍ନ ସବୁ ଯିଏ ମଲେ
ମୁହୂର୍ତ୍ତର ସିଂହାସନ ନ ହେଉଣୁ କ୍ଲାନ୍ତ ଅଭିଷେକ ।।

ଏଠ ତେଣୁ ଉଲଲଗେ ଝାଉଁଗଛ ଅସ୍ପଷ୍ଟ କାନ୍ଦଣା
ପାତଳ କୁହୁଡ଼ି ଶିଢ଼ି ଫଲଲେ ପାଦ ପକେଇ
ସଞ୍ଜ ଯେବେ ଓହ୍ଲାଉଛି ଆକାଶରୁ ହୋଇ ବାଟବଣା,
ଏଠି ଆଜ ଉଲଲଗେ ପାଳସ, ମସୃଣ ଏଇ କାଦୁଅରେ
ତୋଫା ଧଳା ଓ ଧୂସର ପକ୍ଷୀର ମୁରୁଜ
ଜିଆର ଯାଉଛି ଗ୍ଲୁଡ଼ି
ଛାଡ଼ିଦେଇ ଶାମୁକା ଗେଣ୍ଡାମାନଙ୍କ ବାଲିପଙ୍କ ହତାଶାରେ
ଆକାଶରେ ବଢ଼ଦର ନାନାଜାତି ରଙ୍ଗ ଓ ପହ୍ନଜ ।।

ବାସ୍, ଆଉ ଟିକକରେ ଲୁଣିପାଣିଧୂଆ ଏଇ ଶିଉଳି ଓ କାଦୁଅରେ
ତାରାସବୁ ବିଂଛୁ ହୋଇଯିବେ
ଭାଙ୍ଗିଯିବ ଘୁଆଁର ଓ ବନ ଡାଳେ ପକ୍ଷୀଙ୍କର ହାଟ
ବିଂଛୁ ହୋଇ ହଜିଯିବ ଲଣ୍ଡନର ମୁମୂର୍ଷୁ ଆଲୁଅ ଆଉ
ପନ୍‌କଣ୍ଟି, ଚକ୍‌ଖଡ଼ି, ଦଆସିଲ, ବସ୍ତାନ, ସିଲଟ୍ ।
ବୋଉଲେ, କାନ୍ଦନା ଆଉ ଅଛୁଣ୍ଡା ଅଙ୍କ ପତ୍ରର
ଆଶା ରଖି ମିଛେ ଉତ୍ତରର । କଇଁକଇଁ ହେଇ ଆନ୍ଧ
କାନ୍ଦନା ପାଗଳୀ ମୋର ଅନ୍ଧୁଣୀ ସମୁଦ୍ର
ସାକ୍ଷୀ ରଖି ନୀରବ ଏ ଅନ୍ତରୀକ୍ଷ, ଗ୍ରହ, ତାରା, ଅସ୍ଥିର ପବନ
ତୋ ବଶିକେଶନ ଏଇ ଲେଉଟାଣି ଆସୁଛି ଘରକୁ
ତୋ ପାଇଁ ଉତ୍ତର ଖୋଜ, ହ୍ୱାଟସାପ ବୁଲ ବୁଲ
ବାଲି ଓ ଅଙ୍ଗାର ତେଇଁ ଯୋଜନ ଯୋଜନ ।।

□□□

ବ୍ରଜନାଥ ରଥ

## ଗୋଟିଏ ନିବେଦନ

ବିଂଶ ଶତାବ୍ଦୀର ହେ ବୁଦ୍ଧିଜୀବୀମାନେ !
ତୁମେ ତୁମର
ଜ୍ୱଳନ୍ତ ହୃଦୟ
ଅଶାନ୍ତ ମନ
ଓ ବିପର୍ଯ୍ୟସ୍ତ ବିବେକକୁ ନେଇ
ମାତ୍ର ଅଳ୍ପ କେତୋଟି ମିନିଟ୍ ପାଇଁ
ଶରତ୍‌ର ଏଇ ନୀଳ ପ୍ରାନ୍ତର ଉପରକୁ ଆସ ।
ଖୁବ୍ ଦୂର ଆକାଶରେ
ସାନ ସାନ ପିଲାଙ୍କର
ଛୋଟ ଛୋଟ କୌତୂହଳୀ ଆଖି ଭଳି
ତାରାଗୁଡ଼ିଏ ମିଟିମିଟି କରି
ପୃଥିବୀ ଆଡ଼କୁ ଅନାଇଛନ୍ତି;
ସେମାନଙ୍କୁ ଟିକିଏ ଦେଖ ।

ଝିଙ୍କାରିଗୁଡ଼ାକ
ଘାସର ଟେବୁଲ ଉପରେ ବସି
ରୁଣୁଝୁଣୁ ଶବ୍ଦକରି
ଅତି ବେପରୱା ଭାବରେ
ଗୀତ ଗାଉଛନ୍ତି;
ସେମାନଙ୍କର ସେହି ଗୀତକୁ ଟିକିଏ ଶୁଣ,
ଆଉ, ଯଦି ପାର
ସେମାନଙ୍କ ସହିତ ଟିକିଏ ମନଖୋଲା
ଖୁସିଗପ ବି କର ।
ତା'ପରେ ମୋ କଥା ମାନି
ତୁମର ମନକୁ
ଗୁଡ଼ାଏ ଝଲମଲ ରଙ୍ଗୀନ୍ ପ୍ରଜାପତି କରି
ଉଡ଼ାଇ ଦିଅ ।

ତୁମର ହୃଦୟକୁ
ଗୁଡ଼ାଏ ମଖମଲ ସତେଜ ଫୁଲ କରି
ଗୁନ୍ଥାଇ ଦିଅ ।
ଆଉ ନିଜେ
ଶ୍ରେଷ୍ଠ ଶିଳ୍ପୀଟିଏ ଭଳି
ସେହି ଉଡ଼ନ୍ତା ପ୍ରଜାପତିଗୁଡ଼ିକୁ
ଧରିବା ପାଇଁ
ସେହି ଫୁଟନ୍ତ ଫୁଲଗୁଡ଼ିକୁ
ତୋଳିବା ପାଇଁ
ଟଳଟଳ ପାଦରେ
ଢଳଢଳ ଘୁରିବୁଲ ।

ତା'ପରେ ଦେଖିବ
ପୃଥିବୀକୁ 'ବସନ୍ତ' ଆସିବାକୁ
ଖୁବ୍ ବେଶି ଡେରି ନାହିଁ ।

□□□